

# ୨୦୦୮-୦୯ର ପ୍ରଥମ ଅତିରିକ୍ତ ବଜେଟ୍



ଓଡ଼ିଶା ବିଧାନସଭାରେ ମାନ୍ୟବର ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ତା.୨୬.୧୧.୨୦୦୮ରିଖରେ ୭୫୮୭.୬୯ କୋଟି ଟଙ୍କାର ଅତିରିକ୍ତ ବ୍ୟୟବରାଦ ବିଧାନସଭାର ଅନୁମୋଦନ ନିମନ୍ତେ ଉପସ୍ଥାପନ କରିଛନ୍ତି ।

### ଅତିରିକ୍ତ ବ୍ୟୟ ବରାଦ

(କୋଟି ଟଙ୍କାରେ)

| କ୍ଷେତ୍ର | ଆର୍ଥିକ ବର୍ଷ | | |
|---|---|---|---|
| | **୨୦୦୬-୦୭** | **୨୦୦୭-୦୮** | **୨୦୦୮-୦୯** |
| ଅଣଯୋଜନା | ୨୦୮୩.୯୭ | ୧୨୧୯.୧୨ | ୫୩୮୮.୯୩ |
| ରାଜ୍ୟ ଯୋଜନା | ୧୩୦୬.୧୩ | ୨୧୮୯.୧୯ | ୧୮୮୮.୮୯ |
| କେନ୍ଦ୍ରୀୟ ଯୋଜନା | ୮୫.୪୭ | ୫୧.୬୩ | ୯୮.୭୮ |
| କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା | ୧୭୮.୬୬ | ୨୭୭.୭୯ | ୨୧୧.୦୯ |
| **ମୋଟ** | **୩୬୫୪.୨୩** | **୩୭୩୭.୭୩** | **୭୫୮୭.୬୯** |

ଚଳିତ ବର୍ଷ ଅତିରିକ୍ତ ବଜେଟ୍‌ରେ ପୂର୍ବବର୍ଷମାନଙ୍କ ତୁଳନାରେ ସର୍ବାଧିକ ବ୍ୟୟବରାଦ କରାଯାଇଛି । ଏକ ଜନମଙ୍ଗଳ ରାଷ୍ଟ୍ରରେ ଲୋକମାନଙ୍କର ଆଶା ଓ ଆକାଂକ୍ଷାକୁ ଆଖି ଆଗରେ ରଖି ଲୋକାଭିମୁଖୀ ସରକାର ଯେଉଁ ଅତିରିକ୍ତ ବ୍ୟୟବରାଦ କରିଛନ୍ତି, ତାହା ନିଶ୍ଚିତ ଭାବେ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି କ୍ଷେତ୍ରରେ ସହାୟକ ହେବ ।

### ଅତିରିକ୍ତ ବ୍ୟୟବରାଦର ଆବଶ୍ୟକତା

☞ ରାଜ୍ୟ ଯୋଜନା ଅଟକଳ ୭୧୦୦ କୋଟି ଟଙ୍କାରୁ ୭୫୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ଯେଉଁଥିରେ ସରକାରୀ କ୍ଷେତ୍ର ପାଇଁ ଅଟକଳ ୬୫୮୧.୮୮ କୋଟି ଟଙ୍କାରୁ ୬୯୮୧.୮୮ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

☞ ଓଡ଼ିଶା ବିପର୍ଯ୍ୟୟ ପାଣ୍ଠିର ପରିମାଣ ୧୫୦ କୋଟି ଟଙ୍କାରୁ ୪୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

☞ କିଲୋଗ୍ରାମ ପିଛା ୨ ଟଙ୍କା ହାରରେ ଅଗଷ୍ଟ ୨୦୦୮ଠାରୁ ରିହାତି ଦରରେ ଚାଉଳ ପ୍ରଦାନ ଏବଂ ଏଥିପାଇଁ ଅତିରିକ୍ତ ବଜେଟ୍‌ରେ ୪୯୯ କୋଟି ଟଙ୍କାର ବ୍ୟୟବରାଦ ।

☞ ୨୫୦ ଗୋଟି ମାଧ୍ୟମିକ ବିଦ୍ୟାଳୟକୁ ବ୍ଲକ୍ ଅନୁଦାନ ପ୍ରଦାନ ।

- ପଶ୍ଚିମ ଓଡ଼ିଶା ବିକାଶ ପରିଷଦକୁ ଅନୁଦାନ ପାଇଁ ବଜେଟ୍‌ରେ ଅତିରିକ୍ତ ବ୍ୟୟବରାଦ ।
- ସର୍ବଶିକ୍ଷା ଅଭିଯାନ ପାଇଁ ଅତିରିକ୍ତ ବ୍ୟୟବରାଦ ।
- କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ ପାଇଁ ଅତିରିକ୍ତ ବ୍ୟୟବରାଦ ।
- ତା.୦୧.୦୧.୧୯୯୪ରିଖଠାରୁ ଅନୁଦାନ ପାଇବା ପାଇଁ ଯୋଗ୍ୟ ବିବେଚିତ ୧୮ଟି ବେସରକାରୀ ମହାବିଦ୍ୟାଳୟ, ଅଣ ସାହାଯ୍ୟପ୍ରାପ୍ତ ସଂସ୍କୃତ ମହାବିଦ୍ୟାଳୟ, ବୈଧକରଣ ଆଇନ, ୧୯୯୮ ଅନୁସାରେ ବାଦ୍ ପଡ଼ିଥିବା ୯୬ ଅଧ୍ୟାପକ ଓ ପ୍ରଦର୍ଶକମାନଙ୍କୁ ବ୍ଲକ୍ ଅନୁଦାନ ପ୍ରଦାନ ପାଇଁ ଅତିରିକ୍ତ ବ୍ୟୟବରାଦ ।
- ବେସରକାରୀ ମହାବିଦ୍ୟାଳୟର ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କୁ ବୃତ୍ତି ଅଗ୍ରୀମ ବେତନ ହାର (Career Advancement Scale) ପ୍ରଦାନ ପାଇଁ ବଜେଟ୍‌ରେ ଅତିରିକ୍ତ ବ୍ୟୟବରାଦ ।
- ଷଷ୍ଠ କେନ୍ଦ୍ରୀୟ ବେତନ କମିଶନଙ୍କ ଏବଂ ଫିଟ୍‌ମେଣ୍ଟ କମିଟିର ରିପୋର୍ଟ ଭିତ୍ତିରେ ରାଜ୍ୟ ସରକାରୀ କର୍ମଚାରୀ ଓ ପେନସନ୍ ଭୋଗୀଙ୍କ ଦରମା ଓ ପେନ୍‌ସନରେ ସମ୍ଭାବ୍ୟ ବୃଦ୍ଧି ପାଇଁ ବଜେଟ୍‌ରେ ଅତିରିକ୍ତ ବ୍ୟୟବରାଦ ।
- ଅନୁସୂଚିତ ଜାତି ଓ ଜନଜାତି ଛାତ୍ରୀମାନଙ୍କୁ ସାଇକେଲ ପ୍ରଦାନ ନେଇ ଅତିରିକ୍ତ ବଜେଟ୍‌ରେ ବ୍ୟୟ ବ୍ୟବସ୍ଥା ।
- ବିଭିନ୍ନ ସମ୍ବଳ ସହବନ୍ଧିତ ଯୋଜନା ତଥା ତ୍ୱରିତ ଜଳସେଚନ ସୁବିଧା ଯୋଜନା, ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି, ସମ୍ବିଧାନର ୨୭୫(୧) ଅନୁଚ୍ଛେଦ ଅନୁସାରେ ଅନୁଦାନ, କେନ୍ଦ୍ରୀୟ ସଡ଼କ ପାଣ୍ଠିରୁ ଅନୁଦାନ, ବାହ୍ୟ ସାହାଯ୍ୟ ପ୍ରାପ୍ତ ପ୍ରକଳ୍ପ, ଜାତୀୟ ସାମାଜିକ ସହାୟତା ଯୋଜନା ଏବଂ ଜବାହାରଲାଲ ନେହରୁ ନଗରାଞ୍ଚଳ ନବୀକରଣ ଯୋଜନା ଇତ୍ୟାଦି ପାଇଁ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ବିଭିନ୍ନ ଜରୁରୀ କାର୍ଯ୍ୟକ୍ରମ ପାଇଁ ଓଡ଼ିଶା ଆକସ୍ମିକ ପାଣ୍ଠିରୁ ଅଗ୍ରୀମ ଅଣାଯାଇଥିବା ଟଙ୍କାର ଭରଣା ନିମନ୍ତେ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- କେନ୍ଦ୍ରରୁ ଆର୍ଥିକ ସହାୟତା ପାଇବା ନିମନ୍ତେ ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି (RIDF) ଅଧୀନରେ କାର୍ଯ୍ୟକାରୀ ହେଉଥିବା ପ୍ରକଳ୍ପ ନିର୍ମାଣ ପାଇଁ ବଜେଟ୍‌ରେ ଅତିରିକ୍ତ ବ୍ୟୟବରାଦ ।
- କର୍ମଚାରୀଙ୍କ ଆବାସିକ ଗୃହ ନିର୍ମାଣ ପାଇଁ ୧୦.୪୦ କୋଟି ଟଙ୍କାର ଅତିରିକ୍ତ ବ୍ୟୟବରାଦ ।
- ଯୋଜନା କ୍ଷେତ୍ରରୁ ହସ୍ତାନ୍ତରିତ ହୋଇ ବେସରକାରୀ ମହାବିଦ୍ୟାଳୟକୁ ବର୍ଦ୍ଧିତ ମହଙ୍ଗାଭତ୍ତା ପ୍ରଦାନ ପାଇଁ ୧୦.୯୮ କୋଟି ଟଙ୍କାର ଅନୁଦାନ ।
- ବିଶ୍ୱବିଦ୍ୟାଳୟମାନଙ୍କୁ ୮.୮୫ କୋଟି ଟଙ୍କାର ବ୍ଲକ୍ ଅନୁଦାନ ବ୍ୟୟବରାଦ ।
- ଯୋଜନା କ୍ଷେତ୍ରରୁ ଅଣଯୋଜନା କ୍ଷେତ୍ରକୁ ହସ୍ତାନ୍ତରିତ ହୋଇ ବେସରକାରୀ ହାଇସ୍କୁଲକୁ ୨୧.୭୪ କୋଟି ଟଙ୍କା ଅନୁଦାନ ପ୍ରଦାନ ।
- ତା.୦୧.୦୧.୨୦୦୯ରିଖଠାରୁ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତୀକ ପେନ୍‌ସନ୍ (Token Pension) ୮୦୦ ଟଙ୍କାରୁ ୧୦୦୦ ଟଙ୍କାକୁ ବୃଦ୍ଧି ।
- ମାନସିକ ଅନଗ୍ରସର ବିଦ୍ୟାଳୟର ଶିକ୍ଷକମାନଙ୍କୁ ୧୦୦ ପ୍ରତିଶତ ବେତନ ଏବଂ ଅନ୍ଧ, ମୂକ ଓ ମାନସିକ ଅନଗ୍ରସର ପିଲାଙ୍କ ପାଇଁ ଉଦ୍ଦିଷ୍ଟ ସ୍ୱତନ୍ତ୍ର ବିଦ୍ୟାଳୟର କର୍ମଚାରୀମାନଙ୍କୁ ମହଙ୍ଗାଭତ୍ତା ୧୨ ପ୍ରତିଶତରୁ ୩୫ ପ୍ରତିଶତକୁ ବୃଦ୍ଧି ।

- ☞ ଅନୁସୂଚିତ ଜନଜାତି ଏବଂ ଜାତି ଛାତ୍ରଙ୍କର ବକେୟା ପ୍ରାକ୍ ମାଟ୍ରିକ୍ ବୃତ୍ତି ପ୍ରଦାନ ପାଇଁ ଅର୍ଥ ବ୍ୟବସ୍ଥା ।
- ☞ ରୋଗୀମାନଙ୍କ ଔଷଧ କ୍ରୟ ବାବଦରେ ଅତିରିକ୍ତ ବ୍ୟୟବରାଦ ।
- ☞ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟକୁ ଅତିରିକ୍ତ ଅନୁଦାନ ବ୍ୟବସ୍ଥା ।
- ☞ ଉଠା ଜଳସେଚନ ନିଗମକୁ ୧୦.୦୦ କୋଟି ଟଙ୍କାର ସବ୍‌ସିଡ଼ି ପ୍ରଦାନ ପାଇଁ ଅତିରିକ୍ତ ବ୍ୟୟ ବ୍ୟବସ୍ଥା ।
- ☞ ମଧୁବାବୁ ପେନ୍‌ସନ୍ ଯୋଜନା, ବିଜୁ ଗ୍ରାମଜ୍ୟୋତି ଯୋଜନା ଓ ଗୋପବନ୍ଧୁ ଗ୍ରାମୀଣ ଯୋଜନା ଆଦି ବିଭିନ୍ନ ରାଜ୍ୟ ଯୋଜନା ପାଇଁ ବଜେଟ୍‌ରେ ଅତିରିକ୍ତ ବ୍ୟୟବରାଦ ।
- ☞ ରାଜ୍ୟ ଅଂଶ ବାବଦ ଉଚ୍ଚ ପ୍ରାଥମିକ ସ୍ତରରେ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ସାର୍ବଜନୀନ କରିବା ପାଇଁ ଅତିରିକ୍ତ ବ୍ୟୟବରାଦ ।
- ☞ ଶସ୍ୟ ବୀମା ପାଇଁ ରାଜ୍ୟ ଅଂଶ ବାବଦରେ ଅତିରିକ୍ତ ବ୍ୟୟବରାଦ ।
- ☞ କୃଷକମାନଙ୍କୁ ଦିଆଯାଉଥିବା ସମବାୟ ଋଣ ଉପରେ ସୁଧ ହାର ୭ ପ୍ରତିଶତରୁ ୫ ପ୍ରତିଶତ ହ୍ରାସ କରିବାକୁ ବଜେଟ୍‌ରେ ଅତିରିକ୍ତ ବ୍ୟୟବରାଦ ।
- ☞ ପ୍ରତ୍ୟେକ ଗ୍ରାମ ପଞ୍ଚାୟତରେ ଗୋଟିଏ ସ୍କୁଲକୁ ଅନୁଦାନ ବାବଦରେ ୨୨୧ଟି ଗ୍ରାମ ପଞ୍ଚାୟତ ପାଇଁ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ☞ ରାଜମହଲ ଛକଠାରେ ଫ୍ଲାଇ ଓଭର ବ୍ରିଜ୍ ନିର୍ମାଣ ପାଇଁ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ☞ ନିର୍ବାଚନ ମଣ୍ଡଳୀ ଭିତ୍ତିରେ ଗ୍ରାମ୍ୟ ରାସ୍ତାର ଉନ୍ନତିକରଣ ପାଇଁ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ☞ ଅନୁସୂଚିତ ଜନଜାତି ଛାତ୍ରୀ ନିବାସରେ ପାନୀୟ ଜଳଯୋଗାଣ ଓ ପରିମଳ ବ୍ୟବସ୍ଥା ପାଇଁ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ☞ କ୍ଷତିରେ ଚାଲୁଥିବା ଆଞ୍ଚଳିକ ଗ୍ରାମ୍ୟବ୍ୟାଙ୍କଗୁଡ଼ିକର ପୁନରୁଦ୍ଧାର ପାଇଁ ରାଜ୍ୟ ସରକାରଙ୍କର ୧୫ ପ୍ରତିଶତ ଅଂଶ ବାବଦରେ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ☞ ନୂଆ ତହସିଲ କାର୍ଯ୍ୟାଳୟ ଗୃହ ନିର୍ମାଣ ପାଇଁ ଅତିରିକ୍ତ ବଜେଟ୍‌ରେ ବ୍ୟୟବରାଦ ।
- ☞ ତ୍ୱରିତ ଗ୍ରାମ୍ୟ ଜଳଯୋଗାଣ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ ୧୬୬.୧୯ କୋଟି ଟଙ୍କାର ଅତିରିକ୍ତ ବ୍ୟୟବରାଦ ।

## ବିଭାଗଭିତ୍ତିକ ଅଣଯୋଜନା ବ୍ୟୟବରାଦ

(କୋଟି ଟଙ୍କାରେ)

| କ୍ର. ନଂ. | ବିଭାଗ | ମୂଳ ବଜେଟ୍ | ଅତିରିକ୍ତ ବଜେଟ୍ |
|---|---|---|---|
| ୧. | ଗୃହ | ୯୫୬.୮୮ | ୩୭୭.୫୩ |
| ୨. | ସାଧାରଣ ପ୍ରଶାସନ | ୪୩.୮୩ | ୧୨.୧୨ |
| ୩. | ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା | ୭୪୨.୬୬ | ୨୦୧୬.୦୬ |
| ୪. | ଆଇନ | ୫୭.୪୫ | ୨୧.୪୮ |
| ୫. | ଅର୍ଥ | ୧୦୬୩୨.୨୯ | ୨୮୪.୦୪ |
| ୬. | ବାଣିଜ୍ୟ | ୩୦.୪୩ | ୯.୦୯ |
| ୭. | ପୂର୍ତ୍ତ | ୬୫୩.୯୬ | ୭୪.୫୨ |

| | | | |
|---|---|---|---|
| ୮. | ଓଡ଼ିଶା ବିଧାନସଭା | ୧୩.୯୩ | ୨.୮୮ |
| ୯. | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ | ୫୪.୫୬ | ୫୦୭.୦୮ |
| ୧୦. | ବିଦ୍ୟାଳୟ ଓ ଗଣଶିକ୍ଷା | ୨୩୪୫.୮୧ | ୯୨୫.୦୩ |
| ୧୧. | ଆଦିବାସୀ ଓ ହରିଜନ ଉନ୍ନୟନ | ୨୧୧.୯୪ | ୫୯.୪୯ |
| ୧୨. | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ | ୬୪୧.୬୯ | ୨୦୭.୦୨ |
| ୧୩. | ଗୃହ ନିର୍ମାଣ ଓ ନଗର ଉନ୍ନୟନ | ୪୯୬.୨୯ | ୪୭.୮୬ |
| ୧୪. | ଶ୍ରମ ଓ ନିୟୋଜନ | ୩୩.୯୬ | ୧୨.୮୫ |
| ୧୫. | କ୍ରୀଡ଼ା ଓ ଯୁବସେବା | ୫.୩୨ | ୧.୪୦ |
| ୧୬. | ଯୋଜନା ଓ ସମନ୍ୱୟ | ୧୫.୬୦ | ୬.୫୯ |
| ୧୭. | ପଞ୍ଚାୟତିରାଜ | ୪୪୪.୦୨ | ୫୪.୫୬ |
| ୧୮. | ସାଧାରଣ ଅଭିଯୋଗ ଓ ପେନ୍‌ସନ ପ୍ରଶାସନ | ୧.୩୧ | ୦.୫୨ |
| ୧୯. | ଶିଳ୍ପ | ୭୦.୩୬ | ୬୨.୩୯ |
| ୨୦. | ଜଳ ସଂପଦ | ୩୩୯.୩୬ | ୧୫୭.୨୧ |
| ୨୧. | ପରିବହନ | ୭୫.୭୧ | ୬.୮୨ |
| ୨୨. | ଜଙ୍ଗଲ ଓ ପରିବେଶ | ୧୨୯.୨୧ | ୫୨.୭୭ |
| ୨୩. | କୃଷି | ୨୨୧.୭୬ | ୭୫.୭୨ |
| ୨୪. | ଇସ୍ପାତ ଓ ଖଣି | ୧୯.୩୮ | ୭.୬୪ |
| ୨୫. | ସୂଚନା ଓ ଲୋକ ସଂପର୍କ | ୧୬.୬୯ | ୪.୫୭ |
| ୨୬. | ଅବକାରୀ | ୨୪.୨୬ | ୮.୮୪ |
| ୨୭. | ବିଜ୍ଞାନ ଓ କାରିଗରୀ | ୧.୬୯ | ୦.୪୫ |
| ୨୮. | ଗ୍ରାମ୍ୟ ଉନ୍ନୟନ | ୪୧୪.୯୦ | ୩୨.୪୫ |
| ୨୯. | ସଂସଦୀୟ ବ୍ୟାପାର | ୧୬.୩୧ | ୩.୪୩ |
| ୩୦. | ଶକ୍ତି | ୭.୦୮ | ୨.୭୩ |
| ୩୧. | ବୟନ ଓ ହସ୍ତତନ୍ତ | ୧୫.୨୩ | ୨୫.୦୩ |
| ୩୨. | ପର୍ଯ୍ୟଟନ ଓ ସଂସ୍କୃତି | ୧୩.୭୪ | ୪.୯୮ |
| ୩୩. | ମତ୍ସ୍ୟ ଓ ପଶୁସଂପଦ | ୧୨୬.୫୯ | ୫୫.୦୪ |
| ୩୪. | ସମବାୟ | ୪୪.୭୧ | ୨୧.୮୨ |
| ୩୫. | ସାଧାରଣ ଉଦ୍ୟୋଗ | ୦.୭୩ | ୦.୨୭ |

| | | | |
|---|---|---|---|
| ୩୬. | ମହିଳା ଓ ଶିଶୁ କଲ୍ୟାଣ | ୨୪୯.୮୮ | ୭.୯୮ |
| ୩୭. | ସୂଚନା ପ୍ରଯୁକ୍ତି ବିଦ୍ୟା | ୦.୬୨ | ୦.୧୬ |
| ୩୮. | ଉଚ୍ଚ ଶିକ୍ଷା | ୫୧୦.୧୫ | ୯୫.୦୨ |
| ୬୦୦୩ ଆଭ୍ୟନ୍ତରୀଣ ଋଣ | | ୧୪୫୮.୭୦ | ୬୩.୪୯ |
| | **ମୋଟ** | **୨୧୧୩୮.୯୯** | **୫୩୮୮.୯୩** |

**ବିଭାଗଭିତ୍ତିକ ରାଜ୍ୟଯୋଜନା ବ୍ୟୟବରାଦ**

(କୋଟି ଟଙ୍କାରେ)

| **କ୍ର.ନଂ.** | **ବିଭାଗ** | **ମୂଳ ବଜେଟ୍** | **ଅତିରିକ୍ତ ବଜେଟ୍** |
|---|---|---|---|
| ୧. | ଗୃହ | ୩୫.୦୦ | ୨୯.୩୭ |
| ୨. | ସାଧାରଣ ପ୍ରଶାସନ | ୧୧.୪୫ | ୨.୦୧ |
| ୩. | ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା | ୧୯.୨୮ | ୧.୪୦ |
| ୪. | ଆଇନ | ୫.୦୦ | ୦.୦୦ |
| ୫. | ଅର୍ଥ | ୦.୦୦ | ୫୬.୩୭ |
| ୬. | ବାଣିଜ୍ୟ | ୯.୦୫ | ୦.୦୯ |
| ୭. | ପୂର୍ତ୍ତ | ୬୧୨.୭୨ | ୩୮୬.୩୯ |
| ୮. | ଓଡ଼ିଶା ବିଧାନସଭା | ୦.୦୦ | ୦.୦୦ |
| ୯. | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ | ୩୮.୧୫ | ୦.୨୩ |
| ୧୦. | ବିଦ୍ୟାଳୟ ଓ ଗଣଶିକ୍ଷା | ୪୧୯.୫୩ | ୩୧.୭୫ |
| ୧୧. | ଆଦିବାସୀ ଓ ହରିଜନ ଉନ୍ନୟନ | ୩୫୪.୭୬ | ୪୭.୬୧ |
| ୧୨. | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ | ୧୮୪.୦୨ | ୦.୦୧ |
| ୧୩. | ଗୃହ ନିର୍ମାଣ ଓ ନଗର ଉନ୍ନୟନ | ୩୫୪.୧୧ | ୮୧.୦୨ |
| ୧୪. | ଶ୍ରମ ଓ ନିୟୋଜନ | ୧.୯୮ | ୧୧.୨୫ |
| ୧୫. | କ୍ରୀଡ଼ା ଓ ଯୁବସେବା | ୨୧.୪୪ | ୦.୦୦ |
| ୧୬. | ଯୋଜନା ଓ ସମନ୍ୱୟ | ୪୬୬.୬୪ | ୦.୦୦ |
| ୧୭. | ପଞ୍ଚାୟତିରାଜ | ୭୯୬.୨୯ | ୨୦୮.୦୮ |
| ୧୮. | ସାଧାରଣ ଅଭିଯୋଗ ଓ ପେନସନ ପ୍ରଶାସନ | ୦.୦୦ | ୦.୦୦ |
| ୧୯. | ଶିଳ୍ପ | ୫୨.୯୨ | ୧.୦୧ |
| ୨୦. | ଜଳସଂପଦ | ୧୩୯୩.୭୧ | ୪୨୬.୭୯ |

| | | | |
|---|---|---|---|
| ୨୧. | ପରିବହନ | ୧୪.୯୭ | ୫.୫୦ |
| ୨୨. | ଜଙ୍ଗଲ ଓ ପରିବେଶ | ୧୭୭.୨୪ | ୨.୨୭ |
| ୨୩. | କୃଷି | ୧୯୯.୨୦ | ୮୪.୭୨ |
| ୨୪. | ଇସ୍ପାତ ଓ ଖଣି | ୭.୬୦ | ୦.୦୦ |
| ୨୫. | ସୂଚନା ଓ ଲୋକ ସଂପର୍କ | ୫.୭୧ | ୬.୦୩ |
| ୨୬. | ଅବକାରୀ | ୨.୧୭ | ୦.୦୦ |
| ୨୭. | ବିଜ୍ଞାନ ଓ କାରିଗରୀ | ୨୩.୪୦ | ୧.୨୭ |
| ୨୮. | ଗ୍ରାମ୍ୟ ଉନ୍ନୟନ | ୩୧୭.୨୦ | ୨୦୬.୯୦ |
| ୨୯. | ସଂସଦୀୟ ବ୍ୟାପାର | ୦.୦୦ | ୦.୦୦ |
| ୩୦. | ଶକ୍ତି | ୨୩୬.୪୦ | ୧୦୬.୦୩ |
| ୩୧. | ବୟନ ଓ ହସ୍ତତନ୍ତ | ୧୯.୧୫ | ୧.୧୧ |
| ୩୨. | ପର୍ଯ୍ୟଟନ ଓ ସଂସ୍କୃତି | ୫୮.୫୮ | ୧୧.୯୯ |
| ୩୩. | ମତ୍ସ୍ୟ ଓ ପଶୁ ସଂପଦ | ୨୮.୭୦ | ୨୫.୩୬ |
| ୩୪. | ସମବାୟ | ୬୭.୫୦ | ୩୪.୭୫ |
| ୩୫. | ସାଧାରଣ ଉଦ୍ୟୋଗ | ୨୯.୦୦ | ୨୧.୫୦ |
| ୩୬. | ମହିଳା ଓ ଶିଶୁ କଲ୍ୟାଣ | ୫୩୭.୮୫ | ୯୪.୫୦ |
| ୩୭. | ସୂଚନା ପ୍ରଯୁକ୍ତି ବିଦ୍ୟା | ୩୦.୦୦ | ୩.୭୩ |
| ୩୮. | ଉଚ୍ଚଶିକ୍ଷା | ୫୪.୧୫ | ୦.୯୦ |
| | **ମୋଟ** | **୬୫୮୧.୮୮** | **୧୮୮୮.୮୯** |

## ଅଣଯୋଜନା ଖର୍ଚ୍ଚର ମୁଖ୍ୟାଂଶ

(କୋଟି ଟଙ୍କାରେ)

| **ବିଭାଗ** | **କେଉଁଥିପାଇଁ ନିଆଯାଇଛି** | **ମୂଳ ବଜେଟ୍** | **ଅତିରିକ୍ତ ବଜେଟ୍** |
|---|---|---|---|
| ଉଚ୍ଚଶିକ୍ଷା | ବେସରକାରୀ ମହାବିଦ୍ୟାଳୟକୁ ଅନୁଦାନ | ୧୧୩.୦୧ | ୧୭.୩୩ (ଏଥି ମଧ୍ୟରୁ ୫.୦୦ Career Advancement Scale ପାଇଁ ଉଦ୍ଦିଷ୍ଟ ଏବଂ ଅବଶିଷ୍ଟ ୧୨.୩୩ ବକେୟା ଦରମା ପାଇଁ ଉଦ୍ଦିଷ୍ଟ) |
| | ବିଶ୍ୱବିଦ୍ୟାଳୟମାନଙ୍କୁ ବ୍ଲକ୍ ଅନୁଦାନ | ୭୧.୩୯ | ୮.୮୫ (ଏଥିମଧ୍ୟରୁ ୩.୦୦ ଫକୀରମୋହନ ବିଶ୍ୱବିଦ୍ୟାଳୟର ଭିତ୍ତିଭୂମି ପାଇଁ ଉଦ୍ଦିଷ୍ଟ) |

| | | | |
|---|---|---|---|
| | ଯୋଜନା କ୍ଷେତ୍ରରୁ ଅଣଯୋଜନା କ୍ଷେତ୍ରକୁ ହସ୍ତାନ୍ତରିତ ହୋଇ ବେସରକାରୀ ମହାବିଦ୍ୟାଳୟକୁ ଅନୁଦାନ | ୧୭୦.୦୦ | ୧୦.୯୮ |
| ବିଦ୍ୟାଳୟ ଓ ଗଣଶିକ୍ଷା | ଯୋଜନା କ୍ଷେତ୍ରରୁ ଅଣଯୋଜନା କ୍ଷେତ୍ରକୁ ହସ୍ତାନ୍ତରିତ ହୋଇ ବେସରକାରୀ ପ୍ରାଥମିକ ବିଦ୍ୟାଳୟକୁ ଅନୁଦାନ | ୧୭.୧୭ | ୪.୦୭ |
| | ଯୋଜନା କ୍ଷେତ୍ରରୁ ଅଣଯୋଜନା କ୍ଷେତ୍ରକୁ ହସ୍ତାନ୍ତରିତ ହୋଇ ବେସରକାରୀ ମାଧ୍ୟମିକ ବିଦ୍ୟାଳୟକୁ ଅନୁଦାନ | ୧୦୫.୩୩ | ୨୧.୭୪ |
| | ବିଦ୍ୟାଳୟମାନଙ୍କୁ ବ୍ଲକ୍ ଅନୁଦାନ | ୦.୦୦ | ୧୦.୦୦ |
| ଗ୍ରାମ୍ୟ ଉନ୍ନୟନ | କନ୍ଧମାଳ ଜିଲ୍ଲାରେ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ | ୦.୦୦ | ୨.୦୦ |
| | କନ୍ଧମାଳ ଜିଲ୍ଲାରେ ରାସ୍ତାର ରକ୍ଷଣାବେକ୍ଷଣ ପାଇଁ | ୦.୦୦ | ୧୦.୦୦ |
| ପଞ୍ଚାୟତିରାଜ | ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କ ପାରିତୋଷିକ, ବୈଠକି ଫିସ୍ ଓ ଦୈନିକ ଭତ୍ତା ବୃଦ୍ଧି | ୧୨.୩୮ | ୩.୫୮ |
| ଅର୍ଥ ବିଭାଗ | ତା.୧.୧.୨୦୦୯ରିଖଠାରୁ ସ୍ୱାଧୀନତା ସଂଗ୍ରାମୀମାନଙ୍କର ପ୍ରତୀକ ପେନସନ୍ ଭତ୍ତା ମାସିକ ୮୦୦ ଟଙ୍କାରୁ ୧୦୦୦ ଟଙ୍କାକୁ ବୃଦ୍ଧି | ୦.୦୦ | ୦.୦୫ |
| ଆଦିବାସୀ ଓ ହରିଜନ ଉନ୍ନୟନ | ଆଦିବାସୀ ଓ ହରିଜନ ଛାତ୍ରଛାତ୍ରୀମାନଙ୍କର ବକେୟା ପ୍ରାକ୍ ମାଟ୍ରିକ୍ ବୃତ୍ତି | ୪୨.୪୦ | ୧.୮୪ |
| | ଆଦିବାସୀ ଓ ହରିଜନ ଛାତ୍ର/ଛାତ୍ରୀ ନିବାସରେ ରୋଷେୟା ତଥା ଜଗୁଆଳୀମାନଙ୍କର ପାରିତୋଷିକ | ୧.୫୩ | ୦.୮୬ |
| ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ | ହାସପାତାଳର ବହିଃ ବିଭାଗ ଓ ଅନ୍ତଃବିଭାଗ ରୋଗୀଙ୍କ ପାଇଁ ଔଷଧ କ୍ରୟ | ୧୪.୬୦ | ୧.୧୦ |
| | ବିଶେଷଜ୍ଞ ଡାକ୍ତରଙ୍କୁ ଭତ୍ତା/ଡାକ୍ତରଙ୍କୁ ଶବ ବ୍ୟବଚ୍ଛେଦ ଭତ୍ତା/ଚୁକ୍ତି ଭିତ୍ତିରେ ନିଯୁକ୍ତି ପାଇଥିବା ଷ୍ଟାଫ୍ ନର୍ସଙ୍କୁ ସ୍ୱତନ୍ତ୍ର ଭତ୍ତା/ଷ୍ଟାଫ୍ ନର୍ସଙ୍କୁ ପୋଷାକ ଭତ୍ତା/କେବିକେ ଏବଂ ଅନ୍ୟ ୩ ଜିଲ୍ଲାରେ କାର୍ଯ୍ୟରତ ଡାକ୍ତରଙ୍କୁ ଆର୍ଥିକ ପ୍ରୋତ୍ସାହନ | ୭.୨୪ | ୩.୫୬ |
| | ୩ଟି ଚିକିତ୍ସା ମହାବିଦ୍ୟାଳୟର ଚୁକ୍ତି ଭିତ୍ତିରେ ନିଯୁକ୍ତି ପାଇଥିବା ଘରୋଇ ଡାକ୍ତର, କେବିକେ ଓ ଅଣକେବିକେ ଜିଲ୍ଲା ଚୁକ୍ତି ଭିତ୍ତିରେ ନିଯୁକ୍ତି ପାଇଥିବା ଡାକ୍ତର/ଷ୍ଟାଫ୍ ନର୍ସ/ ରେଡ଼ିଓଗ୍ରାଫର ଓ ଫାର୍ମାସିଷ୍ଟମାନଙ୍କୁ ଏକୀକୃତ ଦରମା ପ୍ରଦାନ | ୩୦.୮୫ | ୩.୪୨ |
| | ପି.ଜି. ଡାକ୍ତର/ହାଉସର୍ଜନ/ଶିକ୍ଷାନବୀସ ନର୍ସମାନଙ୍କ ଷ୍ଟାଇପେଣ୍ଡ ବୃଦ୍ଧି | ୯.୪୭ | ୩.୮୬ |

| | | | |
|---|---|---|---|
| କୃଷି | କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟକୁ ଅନୁଦାନ | ୧୭.୩୩ | ୪.୨୭ |
| ଖାଦ୍ୟ ଓ ଖାଉଟି କଲ୍ୟାଣ | କିଲୋ ପିଛା ୨ ଟଙ୍କା ହାରରେ ତା.୧.୮.୨୦୦୮ରିଖଠାରୁ ଚାଉଳ ଯୋଗାଣ | ୦.୦୦ | ୪୯୯.୦୦ |
| ପୂର୍ତ୍ତ | ଅଣ ଗେଜେଟେଡ୍ କର୍ମଚାରୀଙ୍କ ବାସଗୃହ ନିର୍ମାଣ | ୦.୦୦ | ୧୦.୪୦ |
| ରାଜସ୍ୱ | ରିଲିଫ୍ ବାବଦରେ | ୪୭୮.୯୭ | ୧୦୫୪.୩୧ |
| ଆଇନ | ୧୦ଟି ନୂତନ କୋର୍ଟ ସ୍ଥାପନ (୩ଟି ଭିଜିଲାନ୍ସ କୋର୍ଟ ଓ ୭ଟି ଅତିରିକ୍ତ ଜିଲ୍ଲା ଦୌରା କୋର୍ଟ) | ୦.୦୦ | ୧.୨୦ |
| ଜଳସଂପଦ | ଓଡ଼ିଶା ଉଠା ଜଳସେଚନ ନିଗମକୁ ଆର୍ଥିକ ସହାୟତା | ୧.୬୮ | ୧୦.୦୦ |
| | ଜଟିଳ ବନ୍ୟା ନିୟନ୍ତ୍ରଣ ପରିଚାଳନା | ୧୬.୦୦ | ୬୧.୬୮ |
| ସ୍ୱରାଷ୍ଟ୍ର | ପୋଲିସ୍ ବାହିନୀର ଆଧୁନିକୀକରଣ | ୨୩.୦୦ | ୨୧.୨୧ |
| | ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଏବଂ ଅନ୍ୟମାନଙ୍କର ହତ୍ୟା ନେଇ ବସିଥିବା ତଦନ୍ତ କମିଶନ | ୦.୦୦ | ୦.୧୧ |
| | କନ୍ଧମାଳ ଜିଲ୍ଲାରେ କେନ୍ଦ୍ରୀୟ ରିଜର୍ଭ ପୋଲିସ୍ ବାହିନୀ ଏବଂ ତ୍ୱରିତ କାର୍ଯ୍ୟ ନିର୍ବାହୀବାହିନୀଙ୍କୁ ତମ୍ବୁ ଓ ଅନ୍ୟାନ୍ୟ ଆସବାବପତ୍ର ଯୋଗାଇଦେବା ପାଇଁ ଆବଶ୍ୟକ ବ୍ୟୟବରାଦ | ୦.୦୦ | ୨.୫୬ |
| | ଜିଲ୍ଲା ଅସ୍ତ୍ରାଗାରର ସଦୃଢ଼ୀକରଣ ଓ ଥାନା ନିର୍ମାଣ | ୦.୦୦ | ୩୨.୪୧ |
| | ନିର୍ମାଣାଧୀନ ୨୫ ଗୋଟି ଅଗ୍ନିଶମ ଗୃହକୁ ସମ୍ପୂର୍ଣ୍ଣ କରିବା ନିମନ୍ତେ | ୧.୧୪ | ୧.୨୩ |
| ବିଭିନ୍ନ ବିଭାଗ ଓଡ଼ିଶା ଆକସ୍ମିକ ପାଣ୍ଠିରୁ ନେଇଥିବା ଟଙ୍କାର ଭରଣା ନିମନ୍ତେ | | ୦.୦୦ | ୧୬୯.୩୮ |
| ସରକାରୀ କର୍ମଚାରୀଙ୍କ ସମ୍ଭାବ୍ୟ ଦରମା ହାର ବୃଦ୍ଧି | | ୦.୦୦ | ୨୨୫୫.୩୬ |

## ରାଜ୍ୟ ଯୋଜନା ଖର୍ଚ୍ଚର ମୁଖ୍ୟାଂଶ

(କୋଟି ଟଙ୍କାରେ)

| ବିଭାଗ | କେଉଁଥିପାଇଁ ନିଆଯାଇଛି | ମୂଳ ବଜେଟ୍ | ଅତିରିକ୍ତ ବଜେଟ୍ |
|---|---|---|---|
| ପଞ୍ଚାୟତିରାଜ | ଗୋପବନ୍ଧୁ ଗ୍ରାମୀଣ ଯୋଜନା | ୧୧୦.୦୦ | ୧୮୫.୦୦ |
| | ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା | ୨୨.୬୬ | ୨୧.୦୩ |
| ଶକ୍ତି | ବିଜୁ ଗ୍ରାମଜ୍ୟୋତି ଯୋଜନା | ୧୦୦.୫୦ | ୫୭.୦୦ |
| | ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତିକରଣ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ | ୬୫.୦୦ | ୪୭.୭୯ |

| | | | |
|---|---|---|---|
| ଜଳସଂପଦ | ତ୍ୱରିତ ଜଳସେଚନ ସୁବିଧା ଯୋଜନା (AIBP) | ୮୦୦.୦୦ | ୨୮୭.୮୯ |
| | ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି (RIDF) | ୧୯୫.୦୦ | ୧୧୨.୧୩ |
| ଅର୍ଥ ବିଭାଗ | କ୍ଷତିରେ ଚାଲୁଥିବା ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କଗୁଡ଼ିକର ପୁନରୁଦ୍ଧାର ପାଇଁ ରାଜ୍ୟ ସରକାରଙ୍କର ଦେୟ ୧୫ ପ୍ରତିଶତ ଅଂଶ ଅର୍ଥ ବାବଦରେ | ୦.୦୦ | ୫୬.୩୪ |
| ମହିଳା ଓ ଶିଶୁ କଲ୍ୟାଣ | ମଧୁବାବୁ ପେନ୍‌ସନ ଯୋଜନା | ୭୨.୦୦ | ୭.୫୫ |
| | ଜାତୀୟ ପରିବାର ସୁବିଧା ଯୋଜନା | ୧୩.୦୦ | ୨୪.୦୦ |
| | ଉଚ୍ଚ ପ୍ରାଥମିକ ସ୍ତରରେ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମକୁ ସାର୍ବଜନୀନ କରିବା ଉଦ୍ଦେଶ୍ୟରେ ରାଜ୍ୟ ଅଂଶ ବାବଦରେ | ୬୭.୧୯ | ୧୦.୦୦ |
| | ଓଡ଼ିଶା ଆକସ୍ମିକ ପାଣ୍ଠିରୁ ନିଆଯାଇଥିବା ଅଗ୍ରୀମ ବ୍ୟତୀତ ଅଙ୍ଗନବାଡ଼ି କର୍ମୀଙ୍କୁ ଦିଆଯାଇଥିବା ପାରିତୋଷିକ | ୦.୦୦ | ୩୪.୪୦ |
| | ବିଦ୍ୟାଳୟ ଯାଉଥିବା ଆଦିବାସୀ ଓ ହରିଜନ ଛାତ୍ରୀମାନଙ୍କୁ ସାଇକେଲ ଯୋଗାଣ | ୨୦.୦୦ | ୮.୪୨ |
| ସମବାୟ | କୃଷକମାନଙ୍କୁ ଦିଆଯାଉଥିବା ସମବାୟ ଋଣ ଉପରେ ସୁଧ ହାର ୭ ପ୍ରତିଶତରୁ ୫ ପ୍ରତିଶତକୁ ହ୍ରାସ ବାବଦକୁ ସୁଧ ରିହାତି ଭରଣା | ୧୧.୪୦ | ୨୦.୦୦ |
| | ଶସ୍ୟବୀମା ପାଇଁ ରାଜ୍ୟର ଅଂଶ | ୩.୦୦ | ୫.୫୦ |
| | ରୁଗ୍ଣ ସମବାୟ ସଂସ୍ଥାର ପୁନଃଉଦ୍ଧାର ପାଇଁ | ୩୫.୦୦ | ୬.୧୬ |
| ସ୍ୱରାଷ୍ଟ୍ର | ଅଗ୍ନିଶମ ସେବା ସଂସ୍ଥାର ଉପକରଣ କ୍ରୟ | ୧.୪୨ | ୨.୨୦ |
| | ଉଚ୍ଚ ନ୍ୟାୟାଳୟର ପରିବୃଦ୍ଧି ଅନ୍ତର୍ଗତ ଗୃହ ନିର୍ମାଣ ନିମନ୍ତେ ରାଜ୍ୟ ଅଂଶ ବାବଦରେ | ୪.୦୦ | ୨.୮୭ |
| | ରାଜ୍ୟର ବିଭିନ୍ନ ନ୍ୟାୟାଳୟରେ ଇ-କୋର୍ଟ ଯୋଜନା ଅନ୍ତର୍ଗତ ୭୧ଟି କମ୍ପ୍ୟୁଟର ପ୍ରକୋଷ୍ଠ ନିର୍ମାଣ ପାଇଁ ରାଜ୍ୟ ଅଂଶ | ୦.୦୦ | ୧.୪୩ |
| | ଆବାସିକ ଗୃହ ନିର୍ମାଣ ନିମନ୍ତେ | ୩.୧୮ | ୭.୩୨ |
| | ନୂଆକରି ଖୋଲା ହେଉଥିବା ଥାନା ପାଇଁ ଅଗ୍ନି ନିର୍ବାପକ ସରଞ୍ଜାମ ଓ ଅନ୍ୟାନ୍ୟ ସାମଗ୍ରୀ | ୧.୪୨ | ୧.୭୦ |
| | ନୂତନ ଅଗ୍ନିଶମ ଗୃହ ନିର୍ମାଣ | ୧.୯୨ | ୨.୦୦ |
| | ଜେଲ ଏକାଡ଼େମୀ ନିର୍ମାଣ | ୦.୦୦ | ୦.୫୦ |
| କୃଷି | ସାର, କୀଟନାଶକ ଔଷଧ ଇତ୍ୟାଦି ପାଇଁ ଆର୍ଥିକ ସହାୟତା | ୧୦.୦୦ | ୪.୦୦ |
| | ଜାତୀୟ ଉଦ୍ୟାନ କୃଷି ମିଶନ | ୦.୬୫ | ୭.୬୭ |

| | | | |
|---|---|---|---|
| | ଜଳ ସିଞ୍ଚନ ବ୍ୟବସ୍ଥା ପାଇଁ | ୦.୧୭ | ୪.୪୧ |
| | ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା | ୧୦୦.୦୦ | ୪୭.୬୦ |
| ଗ୍ରାମ୍ୟ ଉନ୍ନୟନ | ତ୍ୱରିତ ଗ୍ରାମ୍ୟ ଜଳ ଯୋଗାଣ ଯୋଜନା ପାଇଁ ରାଜ୍ୟ ଅଂଶ | ୧୬୩.୦୦ | ୧୬୬.୧୯ |
| | ନିର୍ବାଚନ ମଣ୍ଡଳୀ ଭିତ୍ତିରେ ଗ୍ରାମ୍ୟ ରାସ୍ତାର ଉନ୍ନତି | ୧୪.୫୦ | ୧୪.୫୦ |
| | ଅନୁସୂଚିତ ଜନଜାତି ଛାତ୍ରୀ ନିବାସରେ ଜଳଯୋଗାଣ ଓ ପରିମଳ ବ୍ୟବସ୍ଥା | ୦.୦୦ | ୧୬.୦୦ |
| କ୍ରୀଡ଼ା ଓ ଯୁବସେବା | ପଞ୍ଚାୟତ ଯୁବକ୍ରୀଡ଼ା ଓ ଖେଳ ଅଭିଯାନ ନାମକ ଏକ ନୂତନ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ | ୦.୦୦ | ୧.୯୪ |
| ବିଦ୍ୟାଳୟ ଓ ଗଣଶିକ୍ଷା | କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ | ୧୨.୦୦ | ୧୩.୮୦ |
| | ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ଗୋଟିଏ ସ୍କୁଲକୁ ଅନୁଦାନ ପ୍ରଦାନ ବାବଦରେ ୨୨୧ଟି ଗ୍ରାମପଞ୍ଚାୟତ ପାଇଁ ବ୍ୟୟବରାଦ | ୦.୦୦ | ୪.୦୦ |
| | କନ୍ଧମାଳଠାରେ ପ୍ରସ୍ତାବିତ ପ୍ରଶିକ୍ଷଣ ମହାବିଦ୍ୟାଳୟ ସ୍ଥାପନା ପାଇଁ | ୦.୦୦ | ୦.୭୯ |
| | ରାଜ୍ୟ ବାହାରେ ଥିବା ଓଡ଼ିଆ ମାଧ୍ୟମ ବିଦ୍ୟାଳୟମାନଙ୍କୁ ସହାୟତା | ୦.୦୦ | ୦.୮୬ |
| | ବେସରକାରୀ ଉଚ୍ଚ ବିଦ୍ୟାଳୟମାନଙ୍କୁ ଅନୁଦାନ ପ୍ରଦାନ | ୪୦.୭୯ | ୧୦.୫୦ |
| ପୂର୍ତ୍ତ | ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ଉନ୍ନତିକରଣ ପାଇଁ ରାଜ୍ୟ ଅଂଶ ବାବଦରେ | ୦.୦୦ | ୧୦୦.୦୦ |
| | ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ଉନ୍ନତିକରଣ ପାଇଁ ଯୋଜନା କମିଶନଙ୍କ ସ୍ୱତନ୍ତ୍ର ଅନୁଦାନ | ୦.୦୦ | ୧୦୦.୦୦ |
| | କେନ୍ଦ୍ରୀୟ ସଡ଼କ ପାଣ୍ଠି ଅଧୀନରେ ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ଉନ୍ନତିକରଣ ପାଇଁ | | ୧୦୦.୦୦ |
| | ଭୁବନେଶ୍ୱରସ୍ଥ ରାଜମହଲ ଛକଠାରେ ଫ୍ଲାଇ ଓଭର ବ୍ରିଜ ନିର୍ମାଣ | ୦.୦୦ | ୧୦.୦୦ |
| | ଜାତୀୟ ରାଜପଥର ସ୍ୱତନ୍ତ୍ର ମରାମତି | ୦.୦୦ | ୧୫.୦୦ |
| | ଭୁବନେଶ୍ୱରସ୍ଥିତ ତୋଷାଳୀ ପ୍ଲାଜାର ନବୀକରଣ ପାଇଁ | ୫.୦୦ | ୧୩.୪୧ |
| ପର୍ଯ୍ୟଟନ ଓ ସଂସ୍କୃତି | ଶାମୁକା ବେଳାଭୂମିର ଉନ୍ନତିକରଣ | ୧୦.୦୦ | ୧୦.୦୦ |
| | ଉତ୍ତରାଛକଠାରୁ କେନ୍ଦୁଲି ଭାୟା ଜଗନ୍ନାଥ ସଡ଼କ ରାସ୍ତାର ପ୍ରଶସ୍ତିକରଣ ଓ ଉନ୍ନତିକରଣ | | ୧.୦୦ |
| | ରାଜ୍ୟ ପର୍ଯ୍ୟଟନର ପ୍ରଚାର | ୦.୦୦ | ୧.୦୦ |

| | | | |
|---|---|---|---|
| ମତ୍ସ୍ୟ ଓ ପଶୁସଂପଦ | ଜାତୀୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କଦ୍ୱାରା ମଞ୍ଜୁରୀପ୍ରାପ୍ତ ଚାଲୁ ପ୍ରକଳ୍ପକୁ ସଂପୂର୍ଣ୍ଣ କରିବା | ୩.୦୦ | ୨.୨୫ |
| ସାଧାରଣ ପ୍ରଶାସନ | ଭୁବନେଶ୍ୱର ଓ କଟକଠାରେ ଥିବା ଆବାସିକ ଗୃହର ଜଳ ଯୋଗାଣ ଓ ପରିମଳ ବ୍ୟବସ୍ଥାର ଉନ୍ନତି | ୩.୦୧ | ୧.୦୦ |
| | ସାଧାରଣ ପ୍ରଶାସନ ବିଭାଗର କର୍ମଚାରୀଙ୍କ | ୧.୦୦ | ୧.୦୦ |
| | ସୈନିକ ସ୍କୁଲ, ଭୁବନେଶ୍ୱରଠାରେ ସରକାରୀ ବାସଗୃହ ନିର୍ମାଣ | | |
| | କଟକ ଓ ଭୁବନେଶ୍ୱରରେ ଥିବା ଅଣ-ଆବାସିକ ଓ ଆବାସିକ ସରକାରୀ ଗୃହର ରକ୍ଷଣାବେକ୍ଷଣ/ଉନ୍ନତିକରଣ | ୨.୮୭ + ୫.୩୫ | ୨.୮୫ + ୧.୪୫ |
| ସୂଚନା ଓ ଲୋକ ସଂପର୍କ | ବକେୟା ବିଜ୍ଞାପନ ଦେୟ ପରିଶୋଧ | ୩.୭୦ | ୫.୨୫ |
| ଆଦିବାସୀ ଓ ହରିଜନ ଉନ୍ନୟନ | ଆଦିବାସୀ ଉପଯୋଜନା ଅଞ୍ଚଳରେ ୫୨ ଗୋଟି ନୂଆ ଆବାସିକ ବାଳିକା ଉଚ୍ଚ ବିଦ୍ୟାଳୟ ଖୋଲିବା ପାଇଁ | ୦.୦୦ | ୩.୯୬ |
| | ଆଦିବାସୀ ଓ ହରିଜନ ଛାତ୍ରଛାତ୍ରୀମାନଙ୍କର ପ୍ରାକ୍ ମ୍ୟାଟ୍ରିକ୍ ବୃତ୍ତି | ୯୪.୩୩ | ୧୦.୫୮ |
| | ଆଦିବାସୀ ଛାତ୍ରୀ ନିବାସ ନବୀକରଣ/ନିର୍ମାଣ | ୦.୦୦ | ୧୦.୦୦ |
| ଗୃହ ନିର୍ମାଣ ଓ | ଏକକାଳୀନ ହୁଡ୍‌କୋ ଋଣ ପରିଶୋଧ | ୦.୦୦ | ୧୨.୫୨ |
| ନଗର ଉନ୍ନୟନ | ସହରାଞ୍ଚଳରେ ଚାଲୁ ରହିଥିବା ଜଳ ଯୋଗାଣ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ନିମନ୍ତେ | ୨୬.୧୭ | ୩୧.୬୦ |
| | ଭୁବନେଶ୍ୱର ଓ ରାଉରକେଲା ସହରରେ ଚିହ୍ନଟ ହୋଇଥିବା ବସ୍ତି ରାସ୍ତାର ଉନ୍ନତି ପାଇଁ | ୦.୦୦ | ୦.୨୦ |
| | ଜାତୀୟ ଜବାହରଲାଲ ନେହେରୁ ନଗରାଞ୍ଚଳ ନବୀକରଣ ମିଶନ ଅନ୍ତର୍ଗତ ସମନ୍ୱିତ ଗୃହ ନିର୍ମାଣ ଏବଂ ବସ୍ତି ଉନ୍ନତିକରଣ ଯୋଜନା | ୮.୬୮ | ୨୨.୨୬ |
| ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା | ନୂତନ ତହସିଲ ପ୍ରତିଷ୍ଠା ନିମନ୍ତେ | ୦.୦୦ | ୧.୦୦ |
| ସୂଚନା ପ୍ରଯୁକ୍ତିବିଦ୍ୟା | Infocity-IIର ଭିତ୍ତିଭୂମି ପାଇଁ ରାସ୍ତା ନିର୍ମାଣ, ବିଦ୍ୟୁତ୍ ଓ ଜଳଯୋଗାଣ | ୦.୦୦ | ୨.୦୦ |
| ଯୋଜନା ଓ | ପଶ୍ଚିମ ଓଡ଼ିଶା ବିକାଶ ପରିଷଦକୁ ଅନୁଦାନ | ୩୦.୦୦ | ୨୦.୦୦ |
| ପରିବହନ | ୭୫ଟି ନୂଆ ଯାନ କ୍ରୟ | ୦.୦୦ | ୫.୦୦ |
| ସାଧାରଣ ଉଦ୍ୟୋଗ | ସ୍ୱେଚ୍ଛାକୃତ ଅବସର/ସ୍ୱେଚ୍ଛାକୃତ ପୃଥକୀକରଣ ଯୋଜନା | ୨୯.୦୦ | ୨୧.୫୦ |

# ଦୁଇଟି ଗୁରୁତ୍ୱପୂର୍ଣ୍ଣ ତଦନ୍ତ ରିପୋର୍ଟ

ଗୁରୁକଲ୍ୟାଣ ମହାପାତ୍ର

ଆମ ରାଜ୍ୟର ବାଲେଶ୍ୱର, ଗଂଜାମ ଓ ଗଜପତି ଜିଲ୍ଲାଗୁଡ଼ିକସମେତ ପଡ଼ୋଶୀ ଛତିଶଗଡ଼, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶ ପ୍ରଭୃତି ରାଜ୍ୟଗୁଡ଼ିକ ଚୋରା ନିଶାଦ୍ରବ୍ୟ କାରବାରରେ ଯେ ଦିନେ ସକ୍ରିୟ ହୋଇ ଯାଇଥିଲା, ତାହା ଗତ ଡିସେମ୍ବର ୧୯ ତାରିଖ (୨୦୦୮)ରେ ଓଡ଼ିଶା ବିଧାନସଭାରେ ଆଗତ କରାଯାଇଥିବା ଦୁଇଟି ମଦମୃତ୍ୟୁ ଘଟଣାର ତଦନ୍ତ ରିପୋର୍ଟ ଓ ସେଥିସହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ ରିପୋର୍ଟ ସବୁକୁ ଅନୁଧ୍ୟାନ କଲେ ସହଜରେ ବୁଝା ପଡ଼ିଥାଏ ।

ଏବେ ଦେଶରେ ନକ୍ସଲପନ୍ଥୀମାନଙ୍କଦ୍ୱାରା ଯେଉଁ ହିଂସାକାଣ୍ଡ ସଂଘଟିତ ହେଉଛି, ନିରୀହ ଦେଶବାସୀଙ୍କ ସମେତ ଦେଶର ଆଭ୍ୟନ୍ତରୀଣ ନିରାପତ୍ତା ଦାୟିତ୍ୱରେ ଥିବା ପୋଲିସ୍ ବା ଦେଶର ପ୍ରତିରକ୍ଷା ଦାୟିତ୍ୱରେ ଥିବା ସୈନ୍ୟବାହିନୀର ସୈନିକମାନେ ସେଥିରେ ମଧ୍ୟ ପ୍ରାଣ ହରାଉଛନ୍ତି । ଆଉ କେହି କେହି ଅର୍କମଣ୍ୟ ଓ ବିକଳାଙ୍ଗ ହୋଇ କାଳାତିପାତ କରୁଛନ୍ତି । ନିଶାଦ୍ରବ୍ୟର ବ୍ୟାପକ ଚୋରା କାରବାର କରି ସେଥିରୁ ଲବ୍ଧ ଅର୍ଥରେ ନକ୍ସଲପନ୍ଥୀମାନେ ନାନାଦି ହିଂସାକାଣ୍ଡ ଭିଆଉଥିବା ଘଟଣା ବିଷୟରେ ଏସବୁ ତଦନ୍ତ ରିପୋର୍ଟରେ ଉଲ୍ଲେଖ କରାଯାଇଛି । ମାତ୍ର ନକ୍ସଲପନ୍ଥୀମାନେ ବୁଝିବା ଆବଶ୍ୟକ ଯେ ହିଂସାକାଣ୍ଡ ମାଧ୍ୟମରେ ସକଳ ସାମାଜିକ ସମସ୍ୟାର ସମାଧାନ ସମ୍ଭବ ହୋଇ ନପାରେ । ଏସବୁ ହିଂସାକାଣ୍ଡରେ ଯେଉଁମାନେ ପ୍ରାଣ ହରାଉଛନ୍ତି ବା ଆହତ ହୋଇ ବିକଳାଙ୍ଗ ହେଉଛନ୍ତି, ସାମାଜିକ ଜୀବନରେ ସେମାନେ ମଧ୍ୟ କାହାରି ପିତା, ପତି ବା ଭ୍ରାତା । ହୁଏତ କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ କେତେ ଜଣ ଏପରି ହିଂସାକାଣ୍ଡ ଭିଆଉଛନ୍ତି କିମ୍ବା ନିଶା ସେବନର ପ୍ରଭାବରେ ମଧ୍ୟ ସେମାନେ ଯେ ଏପରି ଜଘନ୍ୟ କାର୍ଯ୍ୟ କରିବାକୁ ପଶ୍ଚାତପଦ ହେଉନଥିବେ । ମାତ୍ର ସୁସ୍ଥ ମନରେ ଚିନ୍ତା କଲେ ହିଂସାକାଣ୍ଡ ଭିଆଉଥିବା ବ୍ୟକ୍ତି ବା ଦଳ ନିଶ୍ଚୟ ଆପଣାର ହୀନ କାର୍ଯ୍ୟପାଇଁ ଅନୁତାପ କରିବେ ।

ବାଲେଶ୍ୱର ଅଞ୍ଚଳରେ ନିଶାଦ୍ରବ୍ୟ ଚୋରା କାରବାର ଉପରେ ଜଷ୍ଟିସ୍ ପି.କେ. ମହାନ୍ତି ତଦନ୍ତ କମିଶନ ଯେଉଁ ରିପୋର୍ଟ ରାଜ୍ୟ ସରକାରଙ୍କୁ ପ୍ରଦାନ କରିଛନ୍ତି, ସେଥିରେ ୧୪ଟି ଗୁରୁତ୍ୱପୂର୍ଣ୍ଣ ବିଷୟରେ ସେ ସୁପାରିଶ କରିଛନ୍ତି । ତାଙ୍କର ଅନ୍ତିମ ସୁପାରିଶଟି ହେଉଛି, ଏପରି ନିଶାଦ୍ରବ୍ୟ କାରବାର ବିରୋଧରେ ଉଭୟ ମୁଦ୍ରଣ ଓ ତଡ଼ିତ ଗଣମାଧ୍ୟମ (Print and Electronic Media), ସୂଚନା ଓ ଲୋକ ସଂପର୍କ ବିଭାଗ ଜରିଆରେ ସଚେତନତା ଅଭିଯାନକୁ ଜାରି ନରଖିଲେ, ଏପରି ନିଶା କାରବାର ଓ ଅନ୍ୟାନ୍ୟ ସାମାଜିକ ବିପତ୍ତିରୁ ସମାଜକୁ ରକ୍ଷା କରିବା କଷ୍ଟକର ।

ଜଷ୍ଟିସ୍ ପି.କେ. ମହାନ୍ତି ତଦନ୍ତ କମିଶନଙ୍କ ରିପୋର୍ଟ ମିଳିବା ପରେ ତାଙ୍କ ରିପୋର୍ଟର ସୁପାରିଶକୁ ଭିତ୍ତିକରି **ରାଜ୍ୟର ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଯେଉଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ ରିପୋର୍ଟ ପ୍ରସ୍ତୁତ କରିଛନ୍ତି, ସେଥିରେ ବାଲେଶ୍ୱର ଜିଲ୍ଲାର ବଳରାମଗଡ଼ି, ଭଦ୍ରକ ଜିଲ୍ଲାର ଧାମରା, କେନ୍ଦ୍ରାପଡ଼ା ଜିଲ୍ଲାର ଜମ୍ବୁ, ଗଂଜାମ ଜିଲ୍ଲାର ଅର୍ଜିପାଲି ଓ ଜଗତସିଂହପୁର ଜିଲ୍ଲାର ପାରାଦୀପଠାରେ ୫ଟି ସମୁଦ୍ରତଟ ଥାନା ପ୍ରତିଷ୍ଠା ଉପରେ ଗୁରୁତ୍ୱାରୋପ କରାଯାଇଛି ।** ନିକଟରେ ମୁମ୍ବାଇଠାରେ କେତେକ ହୋଟେଲ ଉପରେ ପାକିସ୍ତାନର ଆତଙ୍କବାଦୀମାନେ ଯେପରି ହିଂସାକାଣ୍ଡ ଭିଆଇଛନ୍ତି, ସେମାନେ ସମୁଦ୍ର କୂଳ ଦେଇ ମୁମ୍ବାଇରେ ପ୍ରବେଶ କରିଥିବା ଘଟଣା ସ୍ପଷ୍ଟ ହୋଇଯିବା ପରେ ସମୁଦ୍ର ତଟରେ ଥାନା ପ୍ରତିଷ୍ଠା ପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ ରିପୋର୍ଟରେ ଯାହା ଉଲ୍ଲେଖ କରାଯାଇଛି, ତାହା ଯଥାର୍ଥ ପଦକ୍ଷେପ ବୋଲି ମନେ ହେଉଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମଧ୍ୟ ବିଭିନ୍ନ ସମୟରେ ଉପକୂଳ ପେଟ୍ରୋଲିଂ ଓ ତଟରକ୍ଷୀ ବାହିନୀର କାର୍ଯ୍ୟଦକ୍ଷତା ଉପରେ ଗୁରୁତ୍ୱ ଦେଇଆସିଛନ୍ତି ।

ଗତ ୨୦୦୬ ମାର୍ଚ୍ଚ ଓ ଅପ୍ରେଲରେ ଗଂଜାମରେ ଘଟିଥିବା ମଦମୃତ୍ୟୁ ଘଟଣା ଉପରେ ରାଜ୍ୟ ସରକାର ଜଷ୍ଟିସ୍ ପ୍ରସନ୍ନ କୁମାର ପାତ୍ରଙ୍କୁ ଜଣିକିଆ ତଦନ୍ତ କମିଶନ ଭାବେ ନିଯୁକ୍ତି ଦେବା ପରେ ସେ ରାଜ୍ୟ ସରକାରଙ୍କୁ ପ୍ରଦାନ କରିଥିବା ତଦନ୍ତ ରିପୋର୍ଟଟି ମଧ୍ୟ ଗତ ଡିସେମ୍ବର ୧୯ (୨୦୦୮)ରେ ବିଧାନସଭାରେ ଆଗତ କରାଯାଇଥିଲା । ସେହି ରିପୋର୍ଟରେ ନିଶାଦ୍ରବ୍ୟର ଚୋରା କାରବାର ପରି ଅପରାଧ ନିୟନ୍ତ୍ରଣ ପାଇଁ ବହୁବିଧ ପଦକ୍ଷେପର ସୂଚନା ରହିଛି । ଅବକାରୀ ସଂକ୍ରାନ୍ତୀୟ ମାମଲାଗୁଡ଼ିକର ତ୍ୱରିତ ବିଚାର ଲାଗି ପ୍ରତ୍ୟେକ ଜିଲ୍ଲାରେ ସ୍ୱତନ୍ତ୍ର ଅଦାଲତ ପ୍ରତିଷ୍ଠା ଲାଗି ଜଷ୍ଟିସ୍ ପାତ୍ର ତାଙ୍କ କମିଶନ ରିପୋର୍ଟରେ ସୁପାରିଶ କରିଛନ୍ତି । ଉଲ୍ଲେଖନୀୟ ଯେ ଗଂଜାମ ମଦମୃତ୍ୟୁ ଘଟଣାରେ ୧୯ ଜଣଙ୍କର ପ୍ରାଣହାନି ଘଟିଥିଲା । ଜଷ୍ଟିସ୍ ପାତ୍ରଙ୍କ ରିପୋର୍ଟ ଓ ସୁପାରିଶ ଭିତ୍ତିରେ ରାଜ୍ୟ ଅବକାରୀ ବିଭାଗ ମଧ୍ୟ ସାତପୃଷ୍ଠା ବିଶିଷ୍ଟ ଏକ କାର୍ଯ୍ୟାନୁଷ୍ଠାନ ଗ୍ରହଣ ସଂକ୍ରାନ୍ତୀୟ ରିପୋର୍ଟ ପ୍ରସ୍ତୁତ କରିଛନ୍ତି, ଯାହା ସେହି ରିପୋର୍ଟ ସହିତ ବିଧାନସଭାରେ ଉପସ୍ଥାପିତ ହୋଇଥିଲା । ଅବକାରୀ ବିଭାଗକୁ ସକ୍ରିୟ କରାଯିବା ସହିତ ନିଶାଦ୍ରବ୍ୟର ଚୋରା କାରବାର ରୋକିବା ଲାଗି ବିଷାକ୍ତ ମଦପାନରୁ ଜନସାଧାରଣଙ୍କୁ ସୁରକ୍ଷା ଦେବା ପରି କେତେକ ପଦକ୍ଷେପ ବିଷୟରେ ସେଥିରେ ସୂଚନା ରହିଛି ।

ରାଜ୍ୟରେ ମଦ ବିକ୍ରୀକୁ ସଂପୂର୍ଣ୍ଣ ଭାବେ ନିଷେଧ କରାଯିବା ସମ୍ଭବ ନୁହେଁ । ତାହା ହେଲେ ରାଜ୍ୟ ସରକାର ବର୍ଷକୁ ପ୍ରାୟ ୩,୫୦୦ କୋଟି ଟଙ୍କାର ରାଜସ୍ୱ ହରାଇବେ । ଗତ ୨୦୦୭-୦୮ ଆର୍ଥିକ ବର୍ଷରେ ରାଜ୍ୟ ସରକାର ଅବକାରୀ ବିଭାଗୀୟ ସୂତ୍ରରୁ ୫୨୪ କୋଟି ୮୨ ଲକ୍ଷ ଟଙ୍କାର ରାଜସ୍ୱ ପାଇଥିବା ବେଳେ, ଭାଟ୍ ସୂତ୍ରରୁ ୧୨୧ କୋଟି ୬୧ ଲକ୍ଷ ଟଙ୍କା ଓ ପ୍ରବେଶିକା କର ସୂତ୍ରରୁ ୫୫ କୋଟି ୩୧ ଲକ୍ଷ ଟଙ୍କା ପାଇ ପାରିଛନ୍ତି । ତେଣୁ ସଂପୂର୍ଣ୍ଣ ଭାବେ ମଦକୁ ନିଷେଧ କଲେ, ତାହାର ବିପରୀତ ପ୍ରଭାବ ମଧ୍ୟ ପଡ଼ିପାରେ । ଲୋକେ ବିଷାକ୍ତ ମଦର ଆଶ୍ରୟ ନେଇ ମୃତ୍ୟୁମୁଖରେ ପଡ଼ି ପାରନ୍ତି କିମ୍ବା ଆପଣାର ମୂଲ୍ୟବାନ ଅଙ୍ଗକୁ ହରାଇ ବିକଳାଙ୍ଗ ମଧ୍ୟ ହୋଇପାରନ୍ତି । ରାଜ୍ୟରେ ବହୁସଂଖ୍ୟାରେ ଆଦିବାସୀମାନେ ମହୁଲ ଫୁଲ ସଂଗ୍ରହ କରି ଦେଶୀ ମଦ ପ୍ରସ୍ତୁତ ଜରିଆରେ ଜୀବିକା ନିର୍ବାହ କରିଥାନ୍ତି । ସେମାନଙ୍କ ପ୍ରତି ଆମେମାନେ ମାନବିକତା ପ୍ରଦର୍ଶନ କରିବା ଉଚିତ ।

ଅତୀତରେ ଆମର ପଡ଼ୋଶୀ ପ୍ରଦେଶ ଆନ୍ଧ୍ରପ୍ରଦେଶରେ ସଂପୂର୍ଣ୍ଣ ନିଶା ନିବାରଣ ଆଇନ ଲାଗୁ ହୋଇଥିଲା । ମାତ୍ର ଆନ୍ଧ୍ର ସରକାର ତଦ୍ଦ୍ୱାରା ଲାଭବାନ୍ ହୋଇ ପାରିନଥିଲେ । ସେଠାକାର ସରକାର ବିପୁଳ ପରିମାଣର ରାଜସ୍ୱ ତ ହରାଇଥିଲେ, ଲୋକେ ପୁଣି ଚୋରାରେ ବିଷାକ୍ତ ମଦପାନ କରି ଘୋର ଦୁର୍ଦ୍ଦଶା ଭୋଗିବାରୁ ଆନ୍ଧ୍ର ସରକାର ତାଙ୍କ ନୀତି ବଦଳାଇ ମଦ ବିକ୍ରୀର ପୁନଃ ପ୍ରଚଳନ କରିବାକୁ ବାଧ୍ୟ ହୋଇଥିଲେ ।

ପ୍ରାୟ ପନ୍ଦର ବର୍ଷ ତଳେ ୧୯୯୨ରେ କଟକରେ ମଦମୃତ୍ୟୁ ଘଟଣା ପରେ, ରାଜ୍ୟ ସରକାର କଟକରେ ମଦବିକ୍ରୀ ଉପରେ ନିଷେଧାଦେଶ ଜାରି କରିଥିଲେ । ମାତ୍ର ତାହା ଫଳପ୍ରଦ ହେଲା ନାହିଁ । ଲୋକେ ଚୋରାରେ ବିଷାକ୍ତ ମଦପାନ କରି ଦୁର୍ଦ୍ଦଶାଗ୍ରସ୍ତ ହେଲେ । ସ୍ୱାସ୍ଥ୍ୟହାନି ଘଟିଲା । ରାଜ୍ୟ ସରକାର ମଧ୍ୟ ବିପୁଳ ପରିମାଣର ରାଜସ୍ୱ ହରାଇଲେ । ତେଣୁ ରାଜ୍ୟ ସରକାର ସେଠାରେ ମଦ ବିକ୍ରୀର ପୁନଃ ପ୍ରଚଳନ ପର୍ଯ୍ୟାୟକ୍ରମେ କରିଥିଲେ ।

ଗଂଜାମ ମଦମୃତ୍ୟୁ ଘଟଣା ପରେ ଜଷ୍ଟିସ୍ ପାତ୍ର ତଦନ୍ତ କମିଶନ୍, ଅବକାରୀ ବିଭାଗରେ ସ୍ୱଚ୍ଛତା ଅବଲମ୍ବନ କରାଯିବାକୁ ତଥା ସଚ୍ଚୋଟ ଓ ଯୋଗ୍ୟତା ସଂପନ୍ନ ଅଧିକାରୀମାନଙ୍କୁ ନିଯୁକ୍ତି ଦେବାକୁ ସୁପାରିଶ କରିଥିଲେ । ତଦନୁଯାୟୀ ଗତ ଅଗଷ୍ଟ ୨୭ (୨୦୦୮)ରେ ରାଜ୍ୟ ସରକାର ଯେଉଁ ନୂତନ ଅବକାରୀ ଆଇନ ପ୍ରଣୟନ କରିଛନ୍ତି, ତହିଁରେ ଉଚ୍ଚସ୍ତରରେ ସଚ୍ଚୋଟ ଅଧିକାରୀମାନଙ୍କୁ ରାଜ୍ୟ ସରକାର ଅବସ୍ଥାପିତ କରିବା ସଂଗେସଂଗେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ୭୨ ବର୍ଷ ପରେ ଯେ ଚୋରା ମଦ ବେପାରୀଙ୍କୁ କଠୋର ଦଣ୍ଡବିଧାନ ଭଳି ଅନେକ ଯୁଗୋପଯୋଗୀ ପଦକ୍ଷେପର ବ୍ୟବସ୍ଥା ରହିଛି, ତାହା ରାଜ୍ୟ ପାଇଁ ଫଳପ୍ରଦ ହୋଇପାରିବ ବୋଲି ଆଶା କରାଯାଉଛି ।

ଡି.-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨



# ସୁବର୍ଣ୍ଣପାଲିର ଧନୁଯାତ୍ରା

ଡକ୍ଟର ଚିତ୍ରସେନ ପଣ୍ଡାୟତ

**ଗ**ତ ତିନିବର୍ଷ ଭିତରେ ସୁବର୍ଣ୍ଣପାଲି ନିଜର ସ୍ୱକୀୟ ସଂସ୍କୃତି ଓ ପରମ୍ପରା ସୃଷ୍ଟି କରିପାରିଛି । ୨୦୦୬ ମସିହାରୁ ଆରମ୍ଭ ହୋଇଥିବା ସୁବର୍ଣ୍ଣପାଲିର ଧନୁଯାତ୍ରା ଏହାର ଆଖପାଖ ଆଠଗୋଟି ଗ୍ରାମପଞ୍ଚାୟତ ଯଥା- ସୁବର୍ଣ୍ଣପାଲି, ଚନ୍ଦନିମାଲ, ଧୁଡ଼ିପାଲି, ଗୁଣ୍ଡୁରୁଟୁଆଁ, ବଡ଼ମାଲ, ଭୋଜପୁର, ଡିମିରିମୁଣ୍ଡା ଓ ବକ୍ସମା କ୍ଷେତ୍ରର ସାଂସ୍କୃତିକ ସଂହତି, ସ୍ୱତନ୍ତ୍ର ଐତିହ୍ୟ ଓ ଜାତୀୟତାର ସ୍ମାରକୀ ରୂପେ ମୁଣ୍ଡ ଟେକିଛି । ଧର୍ମର ମାର୍ଗକୁ ସରଳ ଓ ପ୍ରଶସ୍ତ କରିବା ନିମନ୍ତେ ସର୍ବଦା ଲୋକ ପରମ୍ପରା ସୃଷ୍ଟି ହୋଇଥାଏ । ଏହି କ୍ରମରେ ସୁବର୍ଣ୍ଣପାଲିର ଧନୁଯାତ୍ରା ସଂକୀର୍ଣ୍ଣ ନୁହେଁ । ଜାତି, ଧର୍ମ, ବର୍ଣ୍ଣ, ଗୋଷ୍ଠୀ, ସମ୍ପ୍ରଦାୟ ନିର୍ବିଶେଷରେ ଏଠାର ଧନୁଯାତ୍ରା ସମନ୍ୱୟର ସେତୁ ରୂପେ କାର୍ଯ୍ୟ କରିଛି, ସମସ୍ତ ପ୍ରକାର ଭେଦଭାବକୁ ଭୁଲି ସମସ୍ତଙ୍କୁ ଆବୋରି ନେଇଛି ।

କୁଚିଣ୍ଡା-ଫାସିମାଲ ରାସ୍ତା ଦେଇ ପ୍ରାୟ ଦଶ କିଲୋମିଟର ଗଲେ ଏହି ରାସ୍ତାର ଗୋଟିଏ ପାର୍ଶ୍ୱରେ ଲଛିମାଲ ଏବଂ ଅନ୍ୟପାର୍ଶ୍ୱରେ ସୁବର୍ଣ୍ଣପାଲି ପଡ଼େ । ଲଛିମାଲ ହେଉଛି ସୁବର୍ଣ୍ଣପାଲି ଗ୍ରାମର ଏକ ହାମଲେଟ । ବିନା ଦ୍ୱିଧାରେ ସ୍ୱୀକାର କରିବାକୁ ପଡ଼ିବ ଯେ, ଧନୁଯାତ୍ରା ସମୟରେ ଲଛିମାଲ ଓ ସୁବର୍ଣ୍ଣପାଲିର ପ୍ରକୃତ ପରିଚୟ ବଦଳିଯାଏ । ଲଛିମାଲକୁ ପୁରାଣ ବର୍ଣ୍ଣିତ ମଥୁରା ନଗରୀ ଏବଂ ସୁବର୍ଣ୍ଣପାଲିକୁ ଗୋପପୁର ଭାବେ ପରିକଳ୍ପନା କରାଯାଏ । ଏତେବଡ଼ ଅଞ୍ଚଳବିଶିଷ୍ଟ ମୁକ୍ତ ଲୋକମଞ୍ଚରେ ଏକକାଳୀନ ଅଭିନୀତ ହେଉଥିବା ଧନୁଯାତ୍ରା ପ୍ରାୟ ପାଞ୍ଚ-ଛଅଦିନ ଧରି ଦର୍ଶକମାନଙ୍କୁ ଅଭିଭୂତ କରେ । ସାଧାରଣତଃ ପୌଷ ଶୁକ୍ଳ ଏକାଦଶୀ ଦିନଠାରୁ ଆରମ୍ଭ ହୋଇ ପୌଷ ପୂର୍ଣ୍ଣମୀ ଯାଏଁ ଅଳ୍ପକାଳସ୍ଥାୟୀ ଏକ ମୁକ୍ତ ଲୋକମଞ୍ଚରେ ଅନୁଷ୍ଠିତ ହେଉଥିବା ଧନୁଯାତ୍ରା କେବଳ ସମ୍ବଲପୁର ଅଞ୍ଚଳ କିମ୍ବା ଓଡ଼ିଶା ନୁହେଁ, ବରଂ ସମଗ୍ର ବିଶ୍ୱ ଲୋକ ସଂସ୍କୃତିକୁ ଏକ ଅମୂଲ୍ୟ ଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉଲ୍ଲେଖନୀୟ ଯେ, ଅନ୍ୟ ଦିଗରେ କୁଚିଣ୍ଡାରୁ ପ୍ରାୟ ଦଶ କିଲୋମିଟର ଦୂରରେ ଅବସ୍ଥିତ ଖଣ୍ଡୋକଟାରେ ମଧ ଧନୁଯାତ୍ରା ଅନୁଷ୍ଠିତ ହୁଏ, ଯାହାକି ମାଘ ପୂର୍ଣ୍ଣମୀରେ ଉଦ୍‌ଯାପିତ ହୋଇଥାଏ ।

ପରମ୍ପରା ଅନୁଯାୟୀ ଧନୁଯାତ୍ରାର ମୁଖ୍ୟ ନାୟକ ହେଉଛନ୍ତି ଦ୍ୱାପର ଯୁଗର ପୁରାଣ ବର୍ଣ୍ଣିତ ମଥୁରା ନଗରୀର ଅତ୍ୟାଚାରୀ ଶାସକ କଂସ ମହାରାଜା । ଏହି ଯାତ୍ରା ଆରମ୍ଭ ହେବା ଦିନଠାରୁ ଅର୍ଥାତ୍ ଗତ ତିନିବର୍ଷ ହେଲା, ଜନୈକ ବନବିହାରୀ ପଟେଲ କଂସ ଭୂମିକାରେ ଅବତୀର୍ଣ୍ଣ ହୋଇ ଦକ୍ଷତାର ସହିତ ଜନସାଧାରଣଙ୍କର ମନୋରଞ୍ଜନ କରୁଛନ୍ତି । ଏହି ଯାତ୍ରାର ଏକ ମୁଖ୍ୟ ଆକର୍ଷଣ ହେଉଛି ଯେ, ସୁବର୍ଣ୍ଣପାଲିର ମହାକୁଡ଼ ସଂଜ୍ଞାଧାରୀ ନନ୍ଦଗଉଡ଼ ଜାତିର ଲୋକମାନଙ୍କ ମଧ୍ୟରୁ ନନ୍ଦରାଜା, ଯଶୋଦା, କୃଷ୍ଣ ଓ ବଳରାମ ଚରିତ୍ର ଆସନ୍ତି । ସହସ୍ରାଧିକ ଲୋକଙ୍କ ସମାଗମରେ ପାଳିତ ହେଉଥିବା ସୁବର୍ଣ୍ଣପାଲିର ଧନୁଯାତ୍ରା ପ୍ରଥମ ଦୁଇ ବର୍ଷ ପାଞ୍ଚଦିନ ଧରି ଚାଲିଥିଲା, କିନ୍ତୁ ଚଳିତ ବର୍ଷ ଛଅ ଦିନ ବ୍ୟାପୀ କାର୍ଯ୍ୟକ୍ରମ କ୍ରମାଗତ ଭାବେ ଦିନରାତି ଚାଲିବ ବୋଲି ଆୟୋଜନ କରାଯାଇଛି । ଏଭଳି ଏକ ବ୍ୟୟବହୁଳ ଲୋକ ରାଜା, ସ୍ଥାନୀୟ ଗଉଁତିଆ, ଜମିଦାର ଓ ଧନାଢ଼୍ୟ ବ୍ୟକ୍ତିଙ୍କ ଯାତ୍ରା ପୃଷ୍ଠପୋଷକତା ବିନା ତିଷ୍ଠି ରହିବା ଅସମ୍ଭବ ମନେହୁଏ ।

ସୁବର୍ଣ୍ଣପାଲି ଧନୁଯାତ୍ରାର ପ୍ରଥମ ପୂଜା ହୁଏ ଧନୁ ସଂକ୍ରାନ୍ତି ଦିନ । ଲୋକମାନଙ୍କ ମଧ୍ୟରେ ଏକ ଅପୂର୍ବ ଉତ୍ସାହ ଓ ଉନ୍ମାଦନା ଖେଳିଯାଏ । ସମସ୍ତେ ସହଯୋଗର ହାତ ବଢ଼ାଇ ଦିଅନ୍ତି । ତା'ପରେ ପୌଷ ଶୁକ୍ଳ ଦଶମୀ/ଏକାଦଶୀ ଦିନଠାରୁ ଆରମ୍ଭ ହୋଇ ପୌଷ ପୂର୍ଣ୍ଣମୀ ଯାଏଁ ପ୍ରାୟ ପାଞ୍ଚ/ଛଅ ଦିନ କାଳ ଅନୁଷ୍ଠିତ ହେଉଥିବା ସୁବର୍ଣ୍ଣପାଲିର ଧନୁଯାତ୍ରାରେ କଂସ ମହାରାଜା ତଥା ଶ୍ରୀକୃଷ୍ଣ ଚରିତ ଉପରେ ଆଧାରିତ ବିଭିନ୍ନ ଚିତ୍ତାକର୍ଷକ ଦୃଶ୍ୟ ପରିବେଷଣ କରାଯାଏ । ଉଗ୍ରସେନଙ୍କୁ ଗାଦିଚ୍ୟୁତ କରି ଯୁବରାଜ କଂସଙ୍କ ରାଜ୍ୟାଭିଷେକ, ଦେବକୀ-ବସୁଦେବ ବିବାହ, ଦୈବବାଣୀ, ଦେବକୀ-ବସୁଦେବଙ୍କୁ ବନ୍ଦୀ, କଂସଦ୍ୱାରା ଦେବକୀ-ବସୁଦେବଙ୍କ ଷଡ଼ପୁତ୍ର ହତ୍ୟା, ଦିଗ୍‌ବିଜୟ, ମଗଧ ରାଜ୍ୟ ଆକ୍ରମଣ, ଜରାସନ୍ଧ ସହିତ ଯୁଦ୍ଧ, ହେତୀ-ପ୍ରହେତୀଙ୍କ ପାଣିଗ୍ରହଣ, ଗୋପପୁରରେ ନନ୍ଦରାଜାଙ୍କ ରାଜ୍ୟାଭିଷେକ, ଶ୍ରୀକୃଷ୍ଣଙ୍କ ଜନ୍ମ ଓ ବସୁଦେବଙ୍କ ଗୋପ ଗମନ, ମଥୁରାପୁରରେ ବିଜୁଳିକନ୍ୟାଙ୍କ ଚେତାବନୀ, ରାକ୍ଷସ

ସହଚରମାନଙ୍କ ଗୋପ ପ୍ରେରଣ, ଗୋପପୁରରେ ନନ୍ଦୋତ୍ସବ, ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା, ପୁତନା ବଧ, ଲବଣୀ ଚୋରି, କାଳୀୟ ଦଳନ, ମଥୁରାପୁରର ରାଜଦରବାରକୁ ମିତ୍ରରାଜାମାନଙ୍କୁ ନିମନ୍ତ୍ରଣ, ଅକ୍ରୁରଙ୍କୁ ଗୋପ ପ୍ରେରଣ, ଗୋପପୁରରେ ଗୋ-ଚାରଣ, ଲଉଡ଼ିଖେଳ, ମଥୁରାପୁରରେ ରଙ୍ଗସଭା, ମହାରାଜା କଂସଙ୍କଦ୍ୱାରା ଯାତ୍ରା ସ୍ଥଳରେ ଧନୁ ସ୍ଥାପନ ଓ ପୂଜନ, ଗୋପପୁର ଯମୁନା (ବଡ଼କଁଟା)ରେ ଗୋବର୍ଦ୍ଧନ ପୂଜା, ବସ୍ତ୍ରହରଣ, ନାବକେଳୀ, ରାସକ୍ରୀଡ଼ା, ଅକ୍ରୁର ଆଗମନ, ସ୍ୱାଗତ ଶୋଭାଯାତ୍ରା, ଗୋପପୁରରେ ଯଶୋଦା ବିଳାପ, ଗୋପୀ-ଗୋପାଳମାନଙ୍କ ବିରହ, ଅକ୍ରୁରଙ୍କ ସହିତ ଶ୍ରୀକୃଷ୍ଣ-ବଳରାମଙ୍କ ମଥୁରା ଗମନ, ବିଦାୟ ଶୋଭାଯାତ୍ରା, ଅକ୍ରୁରଙ୍କ ଯମୁନା ସ୍ନାନ, ମଧୁବନ ଶବରୀ କୁଟୀରରେ ରାତ୍ରୀଯାପନ, ରଜକ ତାରଣ, କୁବୁଜା ଉଦ୍ଧାରଣ, ସୁଦାମା ମାଳୀର ବେଶସଜ୍ଜା, ଧନୁଯାତ୍ରା ସ୍ଥଳକୁ ଶୋଭାଯାତ୍ରା, ମଥୁରାପୁରରେ କୁବଳୟା ତାରଣ, ଅଷ୍ଟମଲ୍ଲ ତାରଣ, କଂସବଧ, ଉଗ୍ରସେନଙ୍କ ପୁନଃ ରାଜ୍ୟାଭିଷେକ, ଦେବକୀ-ବସୁଦେବ ମୁକ୍ତ ହେବା ପରେ ଧନୁଯାତ୍ରାର ସମାପନ ଘୋଷଣା କରାଯାଇଥାଏ ।

ସୁବର୍ଣ୍ଣପାଲି ନିକଟରେ କୌଣସି ନଈ ନଥିବାରୁ ପୁରାଣବର୍ଣ୍ଣିତ ଯମୁନା ନଈ ସମ୍ବନ୍ଧିତ ଦୃଶ୍ୟଗୁଡ଼ିକ ସ୍ଥାନୀୟ ବଡ଼କଁଟାରେ ଆୟୋଜନ କରାଯାଏ । **ପ୍ରାୟ ପ୍ରତିଦିନ ସକାଳେ କଂସ ମହାରାଜା ନିଜର ସାମ୍ରାଜ୍ୟ ପରିଭ୍ରମଣରେ ବାହାରନ୍ତି, ଯାହାକି ସୁବର୍ଣ୍ଣପାଲି ଧନୁଯାତ୍ରାର ସବୁଠାରୁ ଆକର୍ଷଣୀୟ ଅଟେ ।**

ଧନୁଯାତ୍ରାର ବିଭିନ୍ନ ଦିନ କଂସ ମହାରାଜା ତାଙ୍କ ସାମ୍ରାଜ୍ୟ ଭ୍ରମଣ କାଳରେ ଟାଇଁସର, ଶରଧାପାଲି, ବକ୍ସମା, ଲାଡ଼, କୁଚିଣ୍ଡା, ଚାରଭାଟି, ଲସା, କେଲଡ଼ା, ସରଗୁଡ଼ିହି, ନୂଆଁଗାଁ, ଖଡ଼ିଆପାଲି, ତବଲାକଟା, ଝାରମୁଣ୍ଡା, ଡିମିରିମୁଣ୍ଡା, ଭାତପୁରା, ଭୋଜପୁର, ବାଲିମାଳ, ସାଲେଭାଡ଼ି, ଚେରେଙ୍ଗାମାଲ, ବନ୍ଧପାଲି, ଖମାର ବାହାଲ, ବୁଦେଲକାନି, କତରକେଲା, ଗଣ୍ଡା-ଜାମମାଲ, ଗୁଣ୍ଡୁରୁଚୁଆଁ, ଲଛିମାଲ, ନଗ୍ରାବାହାଲ, କଦଲୀକଟା, ଚାନ୍ଦନିମାଲ, ତିହାଡ଼ିପାଲି, ରଜାମୁଣ୍ଡା, ଧୁଡ଼ିପାଲି, ଲିଙ୍ଗାପାଲି, ଲୁଧାପୋଷି, ଶୁଣ୍ଢେନମାଲ ପ୍ରଭୃତି ଗ୍ରାମଗୁଡ଼ିକୁ ଭ୍ରମଣ କରନ୍ତି ।

କଂସ ମହାରାଜାଙ୍କ ସାମ୍ରାଜ୍ୟ ପରିଭ୍ରମଣର ଦୃଶ୍ୟ ଦେଖିଲେ ମନେହୁଏ ସେଠାର ସମସ୍ତ ଅଧିବାସୀ ଧନୁଯାତ୍ରାର ଗୋଟିଏ ଗୋଟିଏ ଚରିତ୍ର ରୂପେ ସ୍ୱାଭାବିକ ଭାବେ ସାମିଲ ହୋଇଯାଆନ୍ତି । ଗ୍ରାମ୍ୟ ଜୀବନ ରସମୟ ହୋଇଉଠେ । ମନେହୁଏ ଯେ, ଅତି ଅଳ୍ପଦିନ ଭିତରେ ସୁବର୍ଣ୍ଣପାଲିର ଧନୁଯାତ୍ରା ତା'ର ସମୃଦ୍ଧି ଓ ସମ୍ଭାବନାର ଦିଗନ୍ତକୁ ପ୍ରସାରିତ କରିପାରିଛି । ଅନ୍ୟ ଅର୍ଥରେ କହିଲେ, ଏହି ସମଗ୍ର ଅଞ୍ଚଳର ସାଧାରଣ ଦର୍ଶକଙ୍କ ସମେତ କଳାକାରଗଣ ସୁବର୍ଣ୍ଣପାଲିର ଧନୁଯାତ୍ରାର ସମୃଦ୍ଧି ଓ ସମ୍ଭାବନାର ଦିଗନ୍ତକୁ ପ୍ରସାରିତ କରିବାରେ ସାହାଯ୍ୟ କରିଛନ୍ତି ।

**ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ କଂସ ମହାରାଜାଙ୍କ ଦରବାର ବସେ । ସେହି ଅବସରରେ କବି ସମ୍ମିଳନୀ ତଥା ସାହିତ୍ୟ ସଭାର ଆୟୋଜନ କରାଯାଏ । ନିଜ ଦରବାରରେ କଂସ ମହାରାଜା ପ୍ରଜାମାନଙ୍କ ହାରୀ-ଗୁହାରି ମଧ୍ୟ ଶୁଣନ୍ତି ଏବଂ ପ୍ରତିକାର ପାଇଁ ଆଦେଶ ପ୍ରଦାନ କରନ୍ତି । ଏଭଳି ଦୃଶ୍ୟଗୁଡ଼ିକ ଦର୍ଶକମାନଙ୍କୁ ବେଶ ଆକୃଷ୍ଟ କରେ ।** ସ୍ଥାନୀୟ ବ୍ୟବସ୍ଥାରେ ନିଜର ଗଠନମୂଳକ ସମାଲୋଚନା ମାଧ୍ୟମରେ ହେଉ ଅଥବା ନିଜର ଝୁଙ୍କବାଜୀ ହୁକୁମ ବଳରେ ହେଉ, ସାମାଜିକ କିମ୍ବା ଆଂଶିକ ଭାବେ ସମାଜକୁ ପ୍ରଭାବିତ କରୁଥିବା ଯେକୌଣସି ପ୍ରସଙ୍ଗ ଉପରେ କଂସ ମହାରାଜା ନିଜର ବିଚାର ଉପସ୍ଥାପନ କରି ସରକାର, ସଙ୍ଗଠନ କିମ୍ବା ବ୍ୟକ୍ତିବିଶେଷଙ୍କର ଅବ୍ୟବସ୍ଥିତ କାର୍ଯ୍ୟ ପ୍ରଣାଳୀକୁ ସୁସଂହତ କରିବାର ପ୍ରଚେଷ୍ଟା ସୁବର୍ଣ୍ଣପାଲି ଧନୁଯାତ୍ରାର ଏକ ମୁଖ୍ୟ ଆକର୍ଷଣ । ଏକ ଅପରାଧଶୂନ୍ୟ, ସ୍ୱଚ୍ଛ, ନିର୍ମଳ ଓ ଦକ୍ଷ ଶାସନ ଓ ପ୍ରଶାସନ ଆଉ କେତେକାଳ କେବଳ ଭାଷଣବାଜିରେ ଚାଲିବ ବୋଲି ହେଉଥିବା ଲୋକାନୁରଞ୍ଜନ ନିମନ୍ତେ ବିଭିନ୍ନ ପ୍ରକାରର ଅପେରା, ଗଣନାଟ୍ୟ, ପ୍ରଦର୍ଶନୀ, ବାଣିଜ୍ୟ ମେଳା, ନୃତ୍ୟଗୀତର ପ୍ରତିଯୋଗିତାମାନ ଆୟୋଜନ ହୁଏ, ଯାହାକି ସାଧାରଣ ଦର୍ଶକଙ୍କ ଜୀବନକୁ ଉପଭୋଗ କରିବାର ଏକ ଭିନ୍ନ ସୁଖଦାୟକ ଅନୁଭବ ପ୍ରଦାନ କରିଥାଏ ।

ଯୁଗ ବଦଳିଛି । ଅତ୍ୟାଧୁନିକ ପ୍ରଯୁକ୍ତିବିଦ୍ୟା ମଣିଷ ଜୀବନଧାରଣର ମାନରେ ଯଥେଷ୍ଟ ପରିବର୍ତ୍ତନ ଆଣି ଦେଇଛି । ଲାଇଟ, ମାଇକ, ସାଉଣ୍ଡ ସିଷ୍ଟମ ସୁବର୍ଣ୍ଣପାଲି ଧନୁଯାତ୍ରାକୁ ଉପଭୋଗ କରିବା ପାଇଁ ଏକ ସ୍ୱତନ୍ତ୍ର ଅନୁଭବ ଦେଇଛି । ତଦ୍ୱାରା ଧନୁଯାତ୍ରାର ଶୁଦ୍ଧତା ଊଣା ହୋଇନାହିଁ, ବରଂ ସମୃଦ୍ଧିର ପରିସର ବୃଦ୍ଧି ପାଇଛି । ଗତ ତିନିବର୍ଷ ମଧ୍ୟରେ ସୁବର୍ଣ୍ଣପାଲି ଧନୁଯାତ୍ରାର ସାଜସଜ୍ଜା, ମେଢ଼ ସଜ୍ଜା, ପୋଷାକ ପରିଚ୍ଛଦ ଇତ୍ୟାଦିରେ ଅନେକ ଉନ୍ନତି ଘଟିଛି । ସେହି ଧନୁଯାତ୍ରା ଯେ କେବଳ ମାନସିକ ଶାନ୍ତି, ସାମାଜିକ ସୌହାର୍ଦ୍ଦ୍ୟ ସୃଷ୍ଟିରେ ସହଯୋଗ କରିଛି ତାହା ନୁହେଁ, ବରଂ ବଞ୍ଚିବାର ଏକ ଭିନ୍ନ ପ୍ରେରଣା ମଧ୍ୟ ଯୋଗାଇଛି । ସର୍ବୋପରି ସେଠାରେ ନିର୍ମିତ ହୋଇଥିବା ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଧନୁଯାତ୍ରାର ପ୍ରଚାର ଓ ପ୍ରସାର ଦିଗରେ ନୂତନ ବେଶ ସହାୟକ ହୋଇପାରିଛି ।

୧୫୨, ବିଜୟ ବିହାର
ନୂଆଗାଁ ରୋଡ଼, ଶିଶୁପାଳଗଡ଼ ପୋଷ୍ଟ ଅଫିସ
ଭୁବନେଶ୍ୱର-୭୫୧୦୦୨

# କଳାହାଣ୍ଡିର ଜଙ୍ଗଲ ସଂପଦ

ମନୋରଞ୍ଜନ ପଟ୍ଟନାୟକ

**ଜ**ଙ୍ଗଲ ଏକ ବ୍ୟାପକ ଶବ୍ଦ । ଏହାର ଇଂରାଜୀ ପ୍ରତିଶବ୍ଦ Forest ଲାଟିନ Foris ଶବ୍ଦରୁ ଆନୀତ । ସାଧାରଣ ଅର୍ଥରେ ଜଙ୍ଗଲ ହେଉଛି ବିଭିନ୍ନ ଗଛମାନଙ୍କର ଏକ ସମାହାର । ଭାରତର ପ୍ରଥମ ପ୍ରସ୍ତରୀକୃତ (Fossilised) ଗଛର ସନ୍ଧାନ ରାଣୀଗଞ୍ଜ କୋଇଲା ଖଣିରେ ମିଳିଛି । ଏହା ପ୍ରାୟ ୨୫ କୋଟି ବର୍ଷ ତଳର । ଭାରତର ବିଖ୍ୟାତ ବୈଜ୍ଞାନିକ ଡଃ ବିରବଲ ସାହାନୀ ଏହି ପ୍ରସ୍ତରୀକୃତ ଗଛର ନାମ ରଖିଛନ୍ତି ଡାଡ଼ୋକାଇଲନ (Dadoxylon) । ତେଣୁ ଗଛର ସୃଷ୍ଟି କେତେ ପୁରାତନ ଏହା ସହଜରେ ଅନୁମେୟ ।




ଆଇନତଃ ଜଙ୍ଗଲକୁ ବିଭିନ୍ନ ବିଭାଗରେ ଭାଗ ଭାଗ କରାଯାଇଛି । ଯଥା- ସଂରକ୍ଷିତ ଜଙ୍ଗଲ (Reserved Forest), ସୁରକ୍ଷିତ ଜଙ୍ଗଲ (Protected Forest) ଏବଂ ଗ୍ରାମ୍ୟ ଜଙ୍ଗଲ ବା (Village Forest) ସୁରକ୍ଷିତ ଜଙ୍ଗଲର ମାଲିକାନା ଜଙ୍ଗଲ ବିଭାଗ ଏବଂ ରାଜସ୍ୱ ବିଭାଗର ମିଳିତ ଉଦ୍ୟମରେ ପରିଚାଳିତ ହୋଇଥାଏ ।

ଏଥର କଳାହାଣ୍ଡିର ଜଙ୍ଗଲ ସଂପଦ ଉପରେ କିଛିଟା ସମ୍ୟକ୍ ସୂଚନା ଦେବା । କଳାହାଣ୍ଡି ଜିଲ୍ଲାର ଜଙ୍ଗଲ ମୁଖ୍ୟତଃ କ୍ରାନ୍ତି ମଣ୍ଡଳୀୟ ବା (Tropical Forest) । ଏକ ସ୍ଥାନର ଜଙ୍ଗଲର ବିବିଧତା ବିଭିନ୍ନ ପ୍ରାକୃତିକ ଉପାଦାନ ଉପରେ ନିର୍ଭର କରେ ।

ସ୍ଥାନଟିର ଅବସ୍ଥିତି, ସମୁଦ୍ର ପତ୍ତନରୁ ଉଚ୍ଚତା, ପାଣିପାଗ, ବୃଷ୍ଟିପାତ, ମାଟି, ପଥର, ବାୟୁ ପ୍ରବାହ ଇତ୍ୟାଦି ଜଙ୍ଗଲ ବୃଦ୍ଧି ଏବଂ ପ୍ରକାରଭେଦରେ ଯଥେଷ୍ଟ ପ୍ରଭାବ ପକାଏ । କଳାହାଣ୍ଡି ଜଙ୍ଗଲର ଏକ ବିଶେଷତ୍ୱ ହେଉଛି ଶାଳ ଗଛର ଉପସ୍ଥିତି । ଶାଳକୁ ସ୍ଥାନୀୟ ଭାଷାରେ ସରଗି ବା ରେଙ୍ଗାଲ କୁହାଯାଏ । ଏପରିକି କେତେଗୁଡ଼ିଏ ଗ୍ରାମର ନାମକରଣ ଏହି ଗଛକୁ ଆଧାର କରି କରାଯାଇଛି ଯଥା- ସରଗିପାଲି ବା ରେଙ୍ଗାଲ ପାଲି । ଏଥିରୁ ସହଜରେ ଅନୁମେୟ ଯେ ଆଗ କାଳରେ ଶାଳ ବା ସରଗି ଗଛ ବହୁମାତ୍ରାରେ ଉପଲବ୍ଧ ହେଉଥିଲା । ଏବେ କିନ୍ତୁ ଶାଳ ଗଛ ତା'ର ବଞ୍ଚିବା ପାଇଁ ସଂଗ୍ରାମ କରୁଛି କଳାହାଣ୍ଡି ଜିଲ୍ଲାରେ । ଶାଳ ଜଙ୍ଗଲ ବିଶେଷ ଭାବରେ କଳାହାଣ୍ଡିରେ ବଢ଼ି ପାରୁନାହିଁ । ଏହାର ମୁଖ୍ୟ କାରଣ ହେଲା ବ୍ୟାପକ ଭାବରେ ଶାଳମଞ୍ଜି ସଂଗ୍ରହ ଏବଂ ଛୋଟ ଗଜା ଗଛ ଦାନ୍ତକାଠିରେ ବ୍ୟବହାର କରାଯାଉଛି ।

ଏହାବ୍ୟତୀତ କଳାହାଣ୍ଡିର ଶାଗୁଆନ ଗଛ ମଧ୍ୟ ଉତ୍କୃଷ୍ଟ ଧରଣର । ଏହି କାଠର ବିଶେଷ ଆଦର ରହିଛି ଖଟ ପଲଙ୍କ ତିଆରି କରିବା ପାଇଁ ।

କଳାହାଣ୍ଡି ଜିଲ୍ଲାର ଭୌଗୋଳିକ ଆୟତନ ହେଉଛି ୭୯୨୦ ବର୍ଗକି.ମି. । ଏହା ମଧ୍ୟରୁ ଜଙ୍ଗଲ ଜମିର ଆୟତନ ୨୫୩୮ ବର୍ଗକି.ମି. ତେଣୁ ଏହି ଜିଲ୍ଲାର ଶତକଡ଼ା ୩୨% ଅଞ୍ଚଳ ଜଙ୍ଗଲଦ୍ୱାରା ଆବୃତ । ଆମର ଜାତୀୟ ଜଙ୍ଗଲ ନୀତି (National Forest Policy) ୧୯୮୮ ଅନୁଯାୟୀ ସ୍ଥଳ ଭାଗର ଶତକଡ଼ା

୩୩% ଭାଗ ଅଞ୍ଚଳ ଜଙ୍ଗଲଦ୍ୱାରା ଆବୃତ ରହିବା କଥା । ତେଣୁ କଳାହାଣ୍ଡିରେ ପ୍ରାୟ ଜାତୀୟ ନୀତିର ପାଖାପାଖି ଅଞ୍ଚଳ ଜଙ୍ଗଲ ଅଛି ।

ଏଥର ଆସିବା ଜଙ୍ଗଲର ପ୍ରକାରଭେଦକୁ । କଳାହାଣ୍ଡିର ଜଙ୍ଗଲ ମୁଖ୍ୟତଃ କ୍ରାନ୍ତିମଣ୍ଡଳୀୟ । ଏହାକୁ ପୁଣି ପତ୍ରଝଡ଼ା ଜଙ୍ଗଲ ଏବଂ ଚିରହରିତ ଜଙ୍ଗଲ ଇତ୍ୟାଦି ଦୁଇ ଭାଗରେ ବିଭକ୍ତ କରାଯାଇପାରେ । **ପତ୍ରଝଡ଼ା ଜଙ୍ଗଲ ଖରାଦିନେ ସମସ୍ତ ଗଛ ପତ୍ରଝଡ଼ା ଦିଏ ଏବଂ ନୂଆପତ୍ର ପରେ କଅଁଳିଥାଏ । ତେଣୁ ଖରାଦିନେ ଏହି ଶ୍ରେଣୀର ଜଙ୍ଗଲ ଶ୍ରୀହୀନ ଦେଖାଯାଏ । କଳାହାଣ୍ଡିର ଏହି ଶ୍ରେଣୀର ଜଙ୍ଗଲ ମୁଖ୍ୟତଃ କେଗାଁ, ଧର୍ମଗଡ଼, କୋକମରା କେସିଙ୍ଗା, ଆମପାଣି ଇତ୍ୟାଦି ଅଞ୍ଚଳରେ ଦେଖାଯାଏ ।**

**ଏହାପରେ ଆସିବା ଚିରହରିତ ଅରଣ୍ୟ ବା Evergreen Forestକୁ । ଏହି ଜଙ୍ଗଲରେ ଗଛ ପତ୍ରଝଡ଼ା ଦିଏ ନାହିଁ ।** ତେଣୁ ବର୍ଷସାରା ସବୁଜ ରହୁଥିବାରୁ ଏହାକୁ ଚିରହରିତ ଅରଣ୍ୟ କୁହାଯାଏ । ଏହା ଥୁଆମୂଳରାମପୁର ଓ ବିଶ୍ୱନାଥପୁର ପ୍ରଭୃତି ଅଞ୍ଚଳରେ ଦେଖାଯାଏ ।

ଉପରୋକ୍ତ ଦୁଇ କିସମର ଜଙ୍ଗଲ ବ୍ୟତୀତ କର୍ଲାପାଟ ଅଞ୍ଚଳରେ ବାଉଁଶ ଜଙ୍ଗଲ ମଧ୍ୟ ଦେଖାଯାଏ ।

ଏଥର ଆସିବା କଳାହାଣ୍ଡିରେ ଜଙ୍ଗଲର ସ୍ଥିତି ଉପରେ । ଏହାକୁ ପୁଣି ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଯଥା-

୧. ସ୍ୱାଧୀନତା ପୂର୍ବ ଜଙ୍ଗଲ

୨. ସ୍ୱାଧୀନତା ପର ଜଙ୍ଗଲ

**ସ୍ୱାଧୀନତା ପୂର୍ବ ଜଙ୍ଗଲ**

ସ୍ୱାଧୀନତା ପୂର୍ବରୁ ବ୍ରିଟିଶ ସରକାର ଭାରତକୁ ଶାସନ କରୁଥିଲେ । ଏହି ସମୟରେ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜଙ୍ଗଲରୁ କିପରି ଭାବରେ ଅଧିକ ଗଛ କଟାଯାଇ ବିଭିନ୍ନ ଉନ୍ନୟନ କାର୍ଯ୍ୟ କରାଯିବ ।

ତେଣୁ ବ୍ୟାପକ ଭାବରେ ମୁଖ୍ୟତଃ ଶାଗୁଆନ ଏବଂ ଶାଳ ଇତ୍ୟାଦି ମୂଲ୍ୟବାନ ଗଛଗୁଡ଼ିକୁ ଅବିଚାରିତ ଭାବରେ କଟାଯାଇ ଲଣ୍ଡନ ପଠାଗଲା । ସେଠାରେ ଏହି କାଠସବୁ ମୁଖ୍ୟତଃ ରେଳ ଲାଇନ ତଳେ ବିଛାଗଲା ଏବଂ ଜାହାଜ ତିଆରିରେ ବ୍ୟବହାର କରାଗଲା । ତେଣୁ ବ୍ରିଟିଶ ଶାସନ ସମୟରେ ଜଙ୍ଗଲର ପ୍ରଭୂତ କ୍ଷତି ହୋଇଥିଲା ।

ଏହା ବ୍ୟତୀତ କଳାହାଣ୍ଡି ଅତୀତରେ ଏକ ରାଜ୍ୟ ଥିଲା ଏବଂ ରାଜା ଏହାକୁ ଶାସନ କରୁଥିଲେ । କଳାହାଣ୍ଡି ରାଜାଙ୍କର ନିଜସ୍ୱ ଜଙ୍ଗଲ ନିୟମ ରହିଥିଲା । ରାଜାଙ୍କ ତରଫରୁ ନିଯୁକ୍ତ ଦେଓ୍ୱାନ ସମସ୍ତ ରାଜକାର୍ଯ୍ୟ ସଂପାଦନ କରୁଥିଲେ ଏବଂ ତାଙ୍କର ଅନୁମତି ବିନା ଜଙ୍ଗଲରୁ କାଠ ନେବା ନିଷେଧ କରାଯାଇଥିଲା ।

**ସ୍ୱାଧୀନତା ପରେ ଜଙ୍ଗଲ**

ଏହା ପରେ ଭାରତ ସ୍ୱାଧୀନ ହେଲା ୧୯୪୭ ମସିହାରେ । ଭାରତ ସ୍ୱାଧୀନ ହେବା ପରେ ଜାତୀୟ ଜଙ୍ଗଲ ନୀତି ପ୍ରଥମେ ପ୍ରଣୟନ କରାଗଲା ୧୯୫୨ ମସିହାରେ । ଏହା ଏକ ଯୁଗାନ୍ତକାରୀ ପଦକ୍ଷେପ । ଭାରତ ସରକାରଙ୍କ ନିଜସ୍ୱ ଜଙ୍ଗଲ ନୀତି ପୁଣି ୧୯୮୮ରେ ପ୍ରଣୀତ ହେଲା । ସ୍ଥାନୀୟ ଲୋକଙ୍କଦ୍ୱାରା ଜଙ୍ଗଲର ରକ୍ଷଣାବେକ୍ଷଣ, ସୁରକ୍ଷା ଓ ପରିଚାଳନା ହେଲା ଏହି ନୀତିର ବୈଶିଷ୍ଟ୍ୟ ।

ଏଥିରେ ମୁଖ୍ୟତଃ ବନସଂରକ୍ଷଣକୁ ବିଶେଷ ଗୁରୁତ୍ୱ ଦିଆଗଲା ଏବଂ ଗଛ କଟା ଉପରେ ଅନେକ କଟକଣା ଜାରି କରାଗଲା ।

ଏଥର ଆସିବା କଳାହାଣ୍ଡିର ଦେଖାଯାଉଥିବା ବିଭିନ୍ନ ବୃକ୍ଷରାଜି ସଂପର୍କରେ । ଏହି ଜିଲ୍ଲାର ଶାଳ ଏବଂ ଶାଗୁଆନ ଏକ ବିଶେଷ ମହତ୍ୱ ବହନ କରେ । ଏହାବ୍ୟତୀତ ଅନ୍ୟାନ୍ୟ ଗଛ ହେଲା, କଙ୍ଗଡ଼ା, ହଳଦୁ, ଛତିଆନ, ସାହାଜ, ବିଜା, ଜାମୁ, ହରିଡ଼ା, ବାହାଡ଼ା, ଅଁଳା, ଧଉରା, ମହୁଲ, ସୁନାରୀ, ଭାଲିଆ, ଗଙ୍ଗ ସିଉଳି, ପାଟୁଳି ଇତ୍ୟାଦି ।

କଳାହାଣ୍ଡି ଜଙ୍ଗଲ ଜୈବ ବିବିଧତାରେ ପରିପୂର୍ଣ୍ଣ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଜଙ୍ଗଲ ଏହାର ସୁରକ୍ଷା କରିବା ପାଇଁ ଜନସାଧାରଣଙ୍କର ସହଯୋଗ ନିତାନ୍ତ ଆବଶ୍ୟକ ।

ରେଞ୍ଜ ଅଫିସର, କେସିଙ୍ଗା
ଜିଲ୍ଲା- କଳାହାଣ୍ଡି



# ବରଗଡ଼ ଜିଲ୍ଲାରେ ଅବସ୍ଥିତ ପବିତ୍ର ନୃସିଂହନାଥ ପୀଠ

ଡଃ ଜଗବନ୍ଧୁ ପଣ୍ଡା

## ପ୍ରାରମ୍ଭରେ ବିଭୁ ସ୍ମରଣ

ମାନବ ଜୀବନରେ ଆଧାତ୍ମିକ ଚେତନାର ପ୍ରାସଙ୍ଗିକତା ତଥା ପ୍ରାଥମିକତା ଦୃଢ଼ ପ୍ରତିପାଦିତ । କ୍ଷୁଦ୍ର ଜଳବିନ୍ଦୁଟିଏ ମହାସାଗରର ଅଥଳ ଜଳରୁ ଭିନ୍ନ ହୋଇ ନ ପାରେ । ଠିକ୍ ସେମିତି ମଣିଷ-ଯାହାର ସୃଷ୍ଟି ଈଶ୍ୱରଙ୍କଦ୍ୱାରା, ସେ ବା କେମିତି ତାଙ୍କଠୁଁ ଭିନ୍ନ ହୋଇପାରିବ ! ବାସ୍ତବିକ ଆତ୍ମା-ପରମାତ୍ମା ମଧ୍ୟରେ ସଂପର୍କ ଯେ ଏକାନ୍ତ ଭାବରେ ନିବିଡ଼ ଏବଂ ଏହା ହିଁ ଆଧାତ୍ମିକତାର ମୂଳ ରହସ୍ୟ । ଆଧାତ୍ମିକତା କହିଲେ ଗୃହ ଜଞ୍ଜାଳ ତ୍ୟାଗ ନୁହେଁ, ସନ୍ନ୍ୟାସୀ ହୋଇ ଜଙ୍ଗଲରେ ତପସ୍ୟା କରିବା ନୁହେଁ, ସାମାଜିକ ଦାୟିତ୍ୱରୁ ଦୂରେଇ ଯିବା କଦାପି ନୁହେଁ । ପରନ୍ତୁ ନିଜ ମଧ୍ୟରେ ଭଗବତ ସତ୍ତାକୁ ନିବିଡ଼ ଭାବରେ ଅନୁଭବ କରିବା ହିଁ ଆଧାତ୍ମିକ ଚେତନାର ବାସ୍ତବ ସଂଜ୍ଞା ହୋଇପାରେ । ଶ୍ରୀମାଙ୍କ ମତରେ - 'ବାସ୍ତବରେ ଆଧାତ୍ମିକତା ଜୀବନ ବନ୍ଧନରୁ ମୁକ୍ତ କରେ ନାହିଁ, ବରଂ ଜୀବନକୁ ଦିବ୍ୟ ଓ ଯଥାର୍ଥ ଚେତନାଚ୍ଛନ୍ନ କରିଥାଏ । ଏହା ହିଁ ଭାରତ ସମଗ୍ର ବିଶ୍ୱକୁ ପ୍ରଦର୍ଶନ କରୁ ।' ଏହି ଆଧାତ୍ମିକ ଚେତନା ସ୍ୱୟଂ ପରମାତ୍ମାଙ୍କ ଦାନ । ସ୍ୱଭାବ କବି ଗଙ୍ଗାଧର ମେହେର ତାଙ୍କ 'ଧର୍ମ' କବିତାରେ ଯଥାର୍ଥରେ ଲେଖିଛନ୍ତି - 'ମାନବକୁ ଧର୍ମ ତତ୍ତ୍ୱବୋଧ ଦିବ୍ୟଜ୍ଞାନ/ ବିଶେଷରେ ବିଶେଶ୍ୱର କରିଛନ୍ତି ଦାନ ।' ପୁନଶ୍ଚ ଏହି ଆଧାତ୍ମିକ ଚେତନାରେ ଆତ୍ମବିଭୋର କବି ଗଙ୍ଗାଧର ତାଙ୍କ 'ମୃଗୟା ଦର୍ଶନ' କବିତାରେ ପରମ କାରୁଣିକ ପ୍ରଭୁ ନୃସିଂହନାଥଙ୍କ ମହିମା ଗାନ କରି ଲେଖିଛନ୍ତି -



'ବନ୍ଦଇ ନୃସିଂହନାଥ ତୁମ୍ଭ ଶ୍ରୀଚରଣ,
ଯେଉଁ ପାଦ କରେ ପାପୀ-ପାତକ ହରଣ,
ଯେଉଁ ପାଦ ତଳେ ପାପ ହରଣ ଝରଣ,
ଶିଖରୀ ଶିଖରୁ ଡେଇଁ ମାଗଇ ଶରଣ ।'

## ଭୌଗୋଳିକ ଅବସ୍ଥିତି

ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିର ଓଡ଼ିଶାର ବରଗଡ଼ ଜିଲ୍ଲାର ପଦ୍ମପୁର ସବ୍‌ଡିଭିଜନ ଅନ୍ତର୍ଗତ ପାଇକମାଳ ବ୍ଲକ୍‌ରେ ଅବସ୍ଥିତ । ପାଇକମାଳରୁ ପ୍ରାୟ ତିନି କିଲୋମିଟର ଦୂରତ୍ୱରେ ଗନ୍ଧମାର୍ଦ୍ଦନ ପାହାଡ଼ର ଉତ୍ତର ଦିଗ ପାଦଦେଶରେ ଏହି ପୁଣ୍ୟପୀଠ ଦଣ୍ଡାୟମାନ । ଏହି ପବିତ୍ରସ୍ଥଳୀକୁ ଯିବାପାଇଁ ପିଚୁ ରାସ୍ତା ରହିଛି । ପୁନଶ୍ଚ ପାଇକମାଳଠାରୁ ପ୍ରାୟ ୩୫ କି.ମି. ଦୂରତ୍ୱରେ ନୂଆପଡ଼ା ରୋଡ଼ ରେଲ ଷ୍ଟେସନ ଅଛି । ସେଠାରେ ଯାତ୍ରୀ ରହିବା ପାଇଁ ମଧ୍ୟ ବିଭିନ୍ନ ସରକାରୀ ଓ ବେସରକାରୀ ସୁବିଧା କରାଯାଇଛି । ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ପକ୍ଷରୁ ଏକ ଉନ୍ନତମାନର ପାନ୍ଥ ନିବାସ ସେଠାରେ ନିର୍ମିତ ହୋଇଛି । ସଂପ୍ରତି ମନ୍ଦିରର ଟ୍ରଷ୍ଟବୋର୍ଡ଼ଦ୍ୱାରା ସେହି ଐତିହାସିକ ଧର୍ମ ଓ ପର୍ଯ୍ୟଟନସ୍ଥଳର ସର୍ବାଙ୍ଗୀନ ଉନ୍ନତିକଳ୍ପେ ପ୍ରୟାସ ଜାରି ରହିଛି ।

## ଆବିର୍ଭାବ ଓ ଆବିଷ୍କାରର ପୃଷ୍ଠଭୂମି

ଶ୍ରୀ ଶ୍ରୀ ନୃସିଂହନାଥ ମହାପ୍ରଭୁଙ୍କ ଆବିର୍ଭାବ ଓ ଆବିଷ୍କାର ସମ୍ବନ୍ଧୀୟ ପୃଷ୍ଠଭୂମିକୁ ବାଦ ଦେଲେ ସେ ସଂପର୍କରେ ଆଲୋଚନାଟିଏ ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ସେଠାରେ ପୂଜା ପାଉଥିବା ଭଗବାନ ମାର୍ଜାରକେଶରୀଙ୍କ ଆବିର୍ଭାବ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଓ ଲୋକୋକ୍ତି ଥିବା ଜଣାଯାଏ । ସେ ସଂପର୍କରେ କନ୍ଧକବି ଯୁଗ ଦାସଙ୍କ 'ଶ୍ରୀ ନୃସିଂହ ଚରିତ' ଓ ରାଜା ଲାଲ ରାଜେନ୍ଦ୍ର ସିଂହ ବରିହାଙ୍କ 'ଶ୍ରୀ ନୃସିଂହ ମହାତ୍ମ୍ୟ'କୁ ଆଧାର କରି ପୃଷ୍ଠେଠ

(୨୦୦୮) ତାଙ୍କ 'ଗୋଟିଏ ବହିର ଶତବାର୍ଷିକୀ' ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି - 'ସୁବାହୁ ବନରେ ଧ୍ୟାନରତ ଉଡ଼ଙ୍ଗ ମୁନି କନ୍ୟା ମାଳତୀ ପ୍ରଥମେ ରାବଣ ଓ ପରେ ମୂଷିକ ରାଜଦ୍ୱାରା ଧର୍ଷିତା ହେବା ପରେ ତାହାର ଗର୍ଭରୁ ଅତ୍ୟାଚାରୀ ମୂଷିକ ଦୈତ୍ୟ ଜନ୍ମ ଗ୍ରହଣ କଲା । ଜନ୍ମ ହେବା ପରେ ସେ ନିଜ ମାତାଙ୍କୁ ଭକ୍ଷଣ କଲା । ଶିବଙ୍କଠାରୁ ବର ପାଇ ସେ ଅତ୍ୟନ୍ତ ବଳଶାଳୀ ହୋଇଉଠିଲା । ତା'ର ଅତ୍ୟାଚାରରେ ତିନିଲୋକ ପ୍ରକମ୍ପିତ ହେବାରେ ଦେବତାମାନଙ୍କ ପ୍ରାର୍ଥନାରେ ସ୍ୱୟଂ ଦୁର୍ଗା ମୂଷିକ ଦୈତ୍ୟ ସହ ଯୁଦ୍ଧ କରି ପରାଜିତ ହେବା ପରେ ଦେବତାମାନେ ବିଷ୍ଣୁଙ୍କ ଶରଣାପନ୍ନ ହୋଇଛନ୍ତି । ବିଷ୍ଣୁ ରାମ ଅବତାରରେ ନୃସିଂହ ରୂପ ଧାରଣ କରି ଅସୁରକୁ ଗୋଡ଼ାଇବାରୁ ସେ ଗନ୍ଧଗିରି ଦେହରେ ଥିବା ସୁଡ଼ଙ୍ଗରେ ଲୁଚି ଯାଇଛି । ମୂଷିକ ଦୈତ୍ୟର ନିଧନ ସକାଶେ ସେଇ କାଳରୁ ଶ୍ରୀରାମ ମାର୍ଜାରକେଶରୀ ରୂପରେ ଜଗିଛନ୍ତି । ପାହାଡ଼ର ଦକ୍ଷିଣ ପଟେ ଶ୍ରୀରାମ ଅନୁଜ ଲକ୍ଷ୍ମଣ 'ହର' ଭାବେ (ହରିଶଙ୍କର) ଦୈତ୍ୟକୁ ଜଗିଛନ୍ତି ।' ପୁନଶ୍ଚ ପ୍ରଭୁଙ୍କ ମୂର୍ତ୍ତିର ଆବିଷ୍କାର ସଂପର୍କରେ ଐତିହାସିକ ରାମଚନ୍ଦ୍ର ମଲ୍ଲିକଙ୍କ ପ୍ରଣୀତ 'ସଂକ୍ଷିପ୍ତ କୋଶଳ ଇତିହାସ' ପୃଷ୍ଠା ୯୮-୯୯ର ବର୍ଣ୍ଣନାକୁ ଉପସ୍ଥାପିତ କରାଗଲା - 'ଗନ୍ଧମାର୍ଦ୍ଦନ ପର୍ବତରେ ୩୨ ଗୋଟି ଝରଣା ଅଛି । ତହିଁ ମଧ୍ୟରୁ ଗୋଟିଏ ଝରଣା ନିକଟରେ ଗୋଟିଏ ରକମର କନ୍ଦକୁ ଖାଦ୍ୟ ରୂପରେ ନିକଟବର୍ତ୍ତୀ କନ୍ଧ ଓ ଅନ୍ୟାନ୍ୟ ଜାତିର ଲୋକମାନେ ବ୍ୟବହାର କରୁଥିଲେ । ଦିନେ ଯମୁନା ନାମରେ ଜଣେ କନ୍ଧୁଣୀ କନ୍ଦା ଖୋଳୁଥିବା ସମୟରେ ମାଟି ଭିତରୁ ଗୋରସର ଧାର ବାହାରିଲା । ତାହା ଦେଖି ସେ ଡରି ତାହାର ସ୍ୱାମୀକୁ ଡାକିଆଣି ଏହା ଦେଖାଇଲା । କନ୍ଧ ଖଣତିରେ ମାଟି ଖୋଳି ମାଟି ଭିତରୁ ଗୋଟିଏ ପ୍ରତିମୂର୍ତ୍ତି ପାଇଲା । ସ୍ତ୍ରୀ ପୁରୁଷ ଦୁହେଁ ମୂର୍ତ୍ତିଟିକୁ ଘରକୁ ନେଲେ । ରାତ୍ରରେ ମୂର୍ତ୍ତି କନ୍ଧକୁ କହିଲେ ଆମ୍ଭେ ନୃସିଂହନାଥ ଅଟୁ, ଆମ୍ଭକୁ ସେବା କର ତୋର ମଙ୍ଗଳ ହେବ । କନ୍ଧ ଭଗବାନଙ୍କୁ ସେବାକରି ବିଷୟଟି ମହାରାଜାଙ୍କୁ ଜଣାଇଲା । ମହାରାଜ ବୈଜଳ ଦେଓ ସେଠାରେ ଗୋଟିଏ ମନ୍ଦିର ନିର୍ମାଣ କରାଇ ନରସିଂହ ମୂର୍ତ୍ତିକୁ ସ୍ଥାପନ କରି ପୂଜା ପାଇଁ ବନ୍ଦୋବସ୍ତ କରିଦେଲେ ।'



**କିମ୍ବଦନ୍ତୀ ଅନେକ**

ଶ୍ରୀ ଶ୍ରୀ ନୃସିଂହନାଥ ପୀଠର ସ୍ୱତନ୍ତ୍ର ମହତ୍ୱ ରହିଛି । ଏହି ପୁଣ୍ୟ ତୀର୍ଥ ତପୋଭୂମିର ମହିମା ସଂପର୍କିତ ଅନେକ କିମ୍ବଦନ୍ତୀ ଶୁଣିବାକୁ ମିଳେ । କପିଳମୁନିଙ୍କର ସାଧନାସ୍ଥଳୀ ଭାବରେ ଏହି ପୀଠର ପୌରାଣିକ ଗୁରୁତ୍ୱ ରହିଛି । କପିଳମୁନିଙ୍କ ନାମାନୁସାରେ ଏଠାରେ ଝରଣାର ଏକ ନିର୍ଦ୍ଦିଷ୍ଟ ଅଂଶ/ସ୍ଥାନକୁ କପିଳଧାର ଭାବରେ ନାମିତ କରାଯାଇଛି । ଶ୍ରୀରାମ-ଲକ୍ଷ୍ମଣ-ସୀତା ବନବାସ ସମୟରେ ଏଠାରେ ସାମୟିକ ଭାବରେ ରହିଥିବା ବିଶ୍ୱାସ କରାଯାଏ । ଦେବୀ ସୀତାଙ୍କ ନାମାନୁସାରେ ସୀତାକୁଣ୍ଡ ରହିଛି । ପୁଣି ନୃସିଂହନାଥ ମନ୍ଦିର ଆଖପାଖରେ କାଉ ବା କାକପକ୍ଷୀ ଦେଖାଯାଆନ୍ତି ନାହିଁ । କିମ୍ବଦନ୍ତୀ ମୁତାବକ ସେଠାକାର ଝରଣା (ସୀତାକୁଣ୍ଡ)ରେ ସ୍ନାନରତ ସୀତା ଦେବୀଙ୍କୁ ଇନ୍ଦ୍ରଙ୍କ ପୁତ୍ର କାକପକ୍ଷୀ ରୂପରେ ଦେଖିବାର ଧୃଷ୍ଟତା କରିଥିବାରୁ ପ୍ରଭୁ ରାମ ତାକୁ ଅଭିଶାପ ପ୍ରଦାନ କରିଥିଲେ ଏବଂ ସେହି ଦିନଠାରୁ ଆଜି ପର୍ଯ୍ୟନ୍ତ ସେହି ପୀଠରେ କାକପକ୍ଷୀ ଦେଖାଯାଇ ନାହାନ୍ତି । ଅବଶ୍ୟ କେତେକ ବୈଜ୍ଞାନିକଙ୍କ ମତରେ ଗନ୍ଧମାର୍ଦ୍ଦନ ପର୍ବତରେ ମହଜୁଦ ଅସରନ୍ତି ବକ୍ସାଇଟ ଯୋଗୁଁ ଚତୁର କାକପକ୍ଷୀ ଆସନ୍ତି ନାହିଁ । ତାହା ପଞ୍ଚପାଣ୍ଡବଙ୍କ ବନବିହାରସ୍ଥଳ ଥିବାର ମଧ କିମ୍ବଦନ୍ତୀ ରହିଛି । ଭୀମଧାର ଓ ଗଦାଧାରକୁ ତାହାର ମୂକସାକ୍ଷୀ କହିଲେ ଭୁଲ ହେବ ନାହିଁ । ଭୀମ ଆମ୍ବ ଖାଇ ଝରଣାରେ ଭସାଇଥିବାରୁ ସେଠାରେ ଅସଂଖ୍ୟ ଆମ୍ବବୃକ୍ଷ ଥିବାର ଲୋକୋକ୍ତି ରହିଛି । ଅନ୍ୟ ଏକ କିମ୍ବଦନ୍ତୀ ଅନୁଯାୟୀ ଏକଦା ଭଗବାନ ଶିବ ତାଙ୍କ କୁଶ ରଖିଦେଇ ଗୋଦାବରୀ ନଦୀରେ ସ୍ନାନ କରୁଥିବା ସମୟରେ ଏକ ଗାଈ ସେହି କୁଶକୁ ଖାଇଦେବାରୁ ତାକୁ କ୍ରୋଧାନ୍ୱିତ ହୋଇ ସେ ହତ୍ୟା କରିଦେଲେ । ଭାରତବର୍ଷର ସମସ୍ତ ଧର୍ମପୀଠ ଭ୍ରମଣ କରିସୁଦ୍ଧା ତାଙ୍କ ଗୋହତ୍ୟା ପାପ ହରଣ ହେଲା ନାହିଁ । ସେହି ସମୟରେ ଗନ୍ଧମାର୍ଦ୍ଦନ ପର୍ବତସ୍ଥିତ ଶ୍ରୀ ଶ୍ରୀ ନୃସିଂହନାଥ ପୀଠରେ ଭଗବାନ ଶିବ ପ୍ରଭୁ ବିଷ୍ଣୁଙ୍କୁ ସାକ୍ଷାତ କରି ତାଙ୍କ ସମସ୍ୟା ଜଣାଇଥିଲେ ଏବଂ ତାଙ୍କ ପରାମର୍ଶକ୍ରମେ ସେଠାକାର ଗୋକୁଣ୍ଡରେ ସ୍ନାନ କରି ଗୋହତ୍ୟା ପାପରୁ ମୁକ୍ତ ହୋଇ ସେ ସେଠାରେ ରହିବାର

ଇଚ୍ଛା ପ୍ରକଟ କରିଥିଲେ । ତେଣୁ ବିଷ୍ଣୁଙ୍କ ଅନୁମତିରେ ଗନ୍ଧମାର୍ଦ୍ଦନ ପାହାଡ଼ର ଅନ୍ୟପଟେ ହରିଶଙ୍କରଠାରେ ଭଗବାନ ଶିବ ରହିଥିବାର ସୂଚନା ମିଳେ । ଉଭୟ ବିଷ୍ଣୁ ଓ ଶିବଙ୍କ ସାକ୍ଷାତ ଘଟିଥିବାରୁ 'ହରି-ଶଙ୍କର' ନାମିତ ହୋଇଥିବାର ଶୁଣାଯାଏ । ଏଭଳି ଅନେକ କିମ୍ବଦନ୍ତୀ ସେହି ପୁଣ୍ୟ ଧାମକୁ ଅଧିକ ରହସ୍ୟମୟ କରିବା ସହ ବୁଦ୍ଧିଜୀବୀ, ଐତିହାସିକ, ଗବେଷକ, ଧାର୍ମିକ ଭାବନାସଂପନ୍ନ ଭକ୍ତବୃନ୍ଦ, ପର୍ଯ୍ୟଟକ, ପରିବେଶ ବିଶାରଦ ଆଦି ଅଗଣିତ ଜନଗଣଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇପାରିଛି ।

ଉଭୟ ବିଷ୍ଣୁ ଓ ଶିବଙ୍କ ସାକ୍ଷାତ ଘଟିଥିବାରୁ 'ହରି-ଶଙ୍କର' ନାମିତ ହୋଇଥିବାର ଶୁଣାଯାଏ ।

### ପୁଣ୍ୟପୀଠ ନୃସିଂହନାଥ ମନ୍ଦିର

'ଶ୍ରୀ ଶ୍ରୀ ନୃସିଂହନାଥ' ଗନ୍ଧମାର୍ଦ୍ଦନ ପର୍ବତର ସୌନ୍ଦର୍ଯ୍ୟପୂର୍ଣ୍ଣ ପ୍ରାକୃତିକ ଶୋଭା ମଧ୍ୟରେ ବିରାଜିତ । ତାହାକୁ ପ୍ରକୃତିର ଅନ୍ୟତମ ବିସ୍ମୟ ବୋଲି କୁହାଯାଇପାରେ । ସେଠାରେ ଥିବା ପାହାଡ଼, ଜଙ୍ଗଲ, ବୃକ୍ଷରାଜି, କୁଳୁକୁଳୁ ନିନାଦିନୀ ପାପହରଣ ଝରଣା ଏବଂ ତା'ର କିମ୍ବଦନ୍ତୀପ୍ରସିଦ୍ଧ କୁଣ୍ଡସବୁର ଦୃଶ୍ୟ ବର୍ଣ୍ଣନା ପାଇଁ ଭାଷା ନାହିଁ । ସେ କେବଳ ଅନୁଭବର ବିଷୟ । 'ଭୀମ ମଣ୍ଡୁଆ, କପିଳଧାର, ସତ୍ୟ ଆମ୍ବ, ପଞ୍ଚପାଣ୍ଡବ, ସୀତାକୁଣ୍ଡ, ଚାଳଧାର, ଗଦାଧାର, ଗୋକୁଣ୍ଡ ତଥା ଅନ୍ୟାନ୍ୟ ଅନେକ ଖୋଲରେ ଭରି ରହିଛି ଅମାପ ଆନନ୍ଦ ଓ ପ୍ରଶାନ୍ତିର ସୂତ୍ର । ଏହାର ଦର୍ଶନରେ ଚୈତନ୍ୟ ଉଦ୍ରେକ ହୁଏ ।' (ମହାନ୍ତି, ୨୦୦୦) କେବଳ ନୃସିଂହନାଥ ପୀଠର ପରିସର ଓ ପରିବେଶ ନୁହେଁ, ବରଂ ମନ୍ଦିର ମଧ୍ୟରେ ବିରାଜିତ ଆରାଧ୍ୟ ଦେବତା ବିରାଡ଼ି ମୁଖମଣ୍ଡଳ ଓ ସିଂହ ଶରୀର ଧାରଣ କରିଥିବା ବିଡ଼ାଳରୂପୀ ବିଷ୍ଣୁ ଅବତାର ଭଗବାନ 'ମାର୍ଜାରକେଶରୀ', ମନ୍ଦିରର ନିର୍ମାଣ ଶୈଳୀ ଓ କାରୁକାର୍ଯ୍ୟ, ମୁଖଶାଳାର ଶିଳାଲେଖ ଆଦି ମଧ୍ୟ ସ୍ୱତନ୍ତ୍ର ଧରଣର ଅଟେ । ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିର ପୂର୍ବମୁଖୀ ହୋଇ ଦଣ୍ଡାୟମାନ । ଏହାର ଦୁଇଗୋଟି ଅଙ୍ଗ ରହିଛି - ମୁଖ୍ୟ ଦେଉଳ ଓ ଜଗମୋହନ । ଜଗମୋହନ ନିକଟରେ ଅନେକ କ୍ଷୁଦ୍ର କୋଠରୀ ରହିଛି ଯେଉଁଥିରୁ ଗୋଟିକରେ ଭୋଗ ପ୍ରସ୍ତୁତି ହୁଏ ଏବଂ ଅନ୍ୟ କେତୋଟିରେ ପୂଜକମାନେ ରହନ୍ତି । ମନ୍ଦିର ସମ୍ମୁଖରେ ଝରଣା ଆରପଟେ ରହିଛି ଗରୁଡ଼ ସ୍ତମ୍ଭ ଯାହାର ଶୀର୍ଷରେ ଦୀପାବଳି ଉପଲକ୍ଷେ ଦୀପ ପ୍ରଜ୍ୱଳନ କରାଯାଇଥାଏ । ଜଗମୋହନର ନିର୍ମାଣ ସମୟରେ ପୂର୍ବ, ଉତ୍ତର ଓ ଦକ୍ଷିଣ ଦିଗରେ ତିନିଗୋଟି ପ୍ରବେଶ ଦ୍ୱାର ରହିଥିଲା, କିନ୍ତୁ ପରବର୍ତ୍ତୀ ସମୟରେ ଦକ୍ଷିଣ ଦ୍ୱାରକୁ ବନ୍ଦ କରି ଦିଆଯାଇଛି । ଜଗମୋହନର କବାଟଗୁଡ଼ିକ କଳା ପ୍ରସ୍ତର ନିର୍ମିତ ତଥା ଅତି ସୁନ୍ଦର ଭାବରେ ଖୋଦିତ ହୋଇଛି । ଜଗମୋହନର ଉତ୍ତରଦିଗ ଲିଣ୍ଟେଲରେ ପଦ୍ମାସନରେ ଗଜଲକ୍ଷ୍ମୀ ବିରାଜିତା । ମୁଖ୍ୟ ମନ୍ଦିରଟି ମଧ୍ୟ ସ୍ୱତନ୍ତ୍ର ଶୈଳୀରେ ନିର୍ମିତ । ଏହାର ଉତ୍ତର ଦିଗରେ ଥିବା କବାଟକୁ ତିନି ଭାଗରେ ବିଭକ୍ତ କରି ସୁନ୍ଦର ଭାବରେ ଖୋଦନ କରାଯାଇଛି । କେନ୍ଦ୍ର ଭାଗରେ ଖୋଦିତ ଶିବମୂର୍ତ୍ତି ବୈଷ୍ଣବ ଓ ଶୈବ ସଂପ୍ରଦାୟର ମିଳନ କଥା ମନେ ପକାଇଦିଏ । ମନ୍ଦିର କାନ୍ଥରେ ନବଗ୍ରହ ଶୋଭା ପାଉଛନ୍ତି । ସୂକ୍ଷ୍ମ କାରୁକାର୍ଯ୍ୟରେ ପରିପୂର୍ଣ୍ଣ ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିର ସଂପର୍କରେ ସମ୍ବଲପୁର ଜିଲ୍ଲା ଗେଜେଟିଅର୍‌ସରେ ବର୍ଣ୍ଣନା ରହିଛି । ଶ୍ରୀ ଶ୍ରୀ ନୃସିଂହନାଥ ପୀଠ କେବଳ ସୌନ୍ଦର୍ଯ୍ୟ ଓ ଧାର୍ମିକ ଦୃଷ୍ଟିରୁ ନୁହେଁ, ମନ୍ଦିର ନିର୍ମାଣ କଳା ଓ ପ୍ରସ୍ତର ଖୋଦିତ ସୂକ୍ଷ୍ମ କାରୁକାର୍ଯ୍ୟ ଯୋଗୁଁ ମଧ୍ୟ ସ୍ୱତନ୍ତ୍ର ମହତ୍ୱ ପ୍ରତିପାଦନ କରେ । ସେହି ସ୍ୱତନ୍ତ୍ରତା ହିଁ ବିଶ୍ୱପ୍ରସିଦ୍ଧ କଳା-ଐତିହାସିକ, ପ୍ରତ୍ନତତ୍ତ୍ୱବିଦ ଓ ଗବେଷକମାନଙ୍କୁ ଆକର୍ଷଣ କରିବାରେ ସଫଳ ହୋଇଛି ।

### ବିତର୍କିତ ନିର୍ମାଣ କାଳ

ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିର ନିର୍ମାଣ ସମୟକୁ ନେଇ ଅନେକ ମତପ୍ରକାଶ ପାଇଛି । କିଏ ତାହାକୁ ପାଟଣା ରାଜା ବୈଜଳ ଦେବଙ୍କଦ୍ୱାରା ନିର୍ମିତ ବୋଲି ମତ ଦେଉଥିବା ବେଳେ ଆଉ କେହି କେହି ଏହା ତାଙ୍କଦ୍ୱାରା ମରାମତି ହୋଇଥିବାର କହନ୍ତି । ଏପରିକି ବୈଜଳ ଦେବଙ୍କ ସମୟକାଳ ନିରୂପଣକୁ ନେଇ ମଧ୍ୟ ଶିବ ପ୍ରସାଦ ଦାଶଙ୍କ ଲିଖିତ ସମ୍ବଲପୁର ଇତିହାସ ଏବଂ ରାମଚନ୍ଦ୍ର ମଲ୍ଲିକଙ୍କ ରଚିତ ସଂକ୍ଷିପ୍ତ କୋଶଳ ଇତିହାସରେ ଭିନ୍ନତା ପରିଲକ୍ଷିତ ହୁଏ । ବିଶେଷକରି ମନ୍ଦିର ମୁଖଶାଳାର ଦକ୍ଷିଣ କାନ୍ଥ ବହିଃପାର୍ଶ୍ୱରେ ଥିବା ଶିଳାଲେଖକୁ ନେଇ ହିଁ ଏହି ସବୁ ମତ-ବିବିଧତା ପ୍ରକାଶିତ । ତେବେ ଶିଳାଲେଖ ବ୍ୟତୀତ ମଧ୍ୟ ମନ୍ଦିର ଅନ୍ୟାନ୍ୟ ଉପାଦାନକୁ ବିଚାରକୁ ନିଆଯାଇ ଏହାର ନିର୍ମାଣ କାଳ ସଂପର୍କରେ ଐତିହାସିକମାନଙ୍କ ମତ ପ୍ରକାଶ ପାଇଛି । **ପ୍ରସିଦ୍ଧ ବ୍ରିଟିଶ ଐତିହାସିକ ସାର୍ ଜେ.ଡି. ବଗଲାର ସର୍ବପ୍ରଥମେ ୧୮୭୪-୭୬ ମସିହାରେ ନୃସିଂହନାଥ ପରିଦର୍ଶନ କରିବା ସହିତ ତା'ର ଦେଉଳ ଓ ଶିଳାଲିପି ସଂପର୍କରେ ଅନୁଧ୍ୟାନ କରି ମନ୍ଦିରଟିକୁ ଖଜୁରାହୋ ମନ୍ଦିରର ସମସାମୟିକ ବୋଲି ମତ ଦେଇଛନ୍ତି । ଅନ୍ୟତମ ପ୍ରଖ୍ୟାତ ଐତିହାସିକ ଡି.ଆର୍. ଭଣ୍ଡାରକର ମଧ୍ୟ ୧୯୦୪-୦୫ ବେଳକୁ ଏହି ମନ୍ଦିର ପରିଦର୍ଶନରେ ଆସି**

**କୋଣାର୍କ ସୂର୍ଯ୍ୟ ମନ୍ଦିର ସମୟର ବୋଲି ମତବ୍ୟକ୍ତ କରିଛନ୍ତି ।** ବିନାୟକ ମିଶ୍ର (୧୯୩୬)ଙ୍କ Indian Historical Quaterly (vol. XII)ରେ ପ୍ରକାଶିତ 'Nrusinghanath Stone Inscription of Vaijaladeva' ଏବଂ କେଦାରନାଥ ମହାପାତ୍ର (୧୯୫୪)ଙ୍କ ଲିଖିତ Orissa Historical Research Journal (III/3)ରେ ପ୍ରକାଶିତ Date of Vaijala Deva-Author of Prabodha Purnachandra' ଶୀର୍ଷକ ପ୍ରବନ୍ଧ ଦୁଇଟିରେ ନୃସିଂହନାଥ ମନ୍ଦିର ମୁଖଶାଳାରେ ଖୋଦିତ ଶିଳାଲେଖକୁ ଆଧାର କରି ତାହା ୧୭ ମାର୍ଚ୍ଚ ୧୪୧୩ର ବୋଲି ଉଲ୍ଲେଖ କରିଛନ୍ତି । କଳା ଐତିହାସିକ ଚାର୍ଲସ ଫାବ୍ରି (୧୯୭୪) ମନ୍ଦିରର ଚାରିଗୋଟି ଆଭ୍ୟନ୍ତରୀଣ ସ୍ତମ୍ଭକୁ ବୌଦ୍ଧଯୁଗୀୟ ମାନେରିଜମ୍ ସ୍ଥାପତ୍ୟ କଳାର ଉଦାହରଣ ଭାବରେ ଗ୍ରହଣ କରିଛନ୍ତି । ପୁନଶ୍ଚ ଟି.ଇ. ଡୋନାଲଡସନଙ୍କ (୧୯୮୫-୮୭)ଙ୍କ ଗବେଷଣାତ୍ମକ ଆଲେଖ୍ୟ Hindu Temple Art of Orissa (vol. II)ରେ ମନ୍ଦିରଟିକୁ ଦଶମ-ଏକାଦଶ ଶତାବ୍ଦୀରେ ହୋଇଥିବା ମତବ୍ୟକ୍ତ କରିଛନ୍ତି । ତେବେ ଓଡ଼ିଶାର ଉପର-ମହାନଦୀ ଉପତ୍ୟକାର ଇତିହାସ ଗବେଷକ ଶ୍ରୀ ଶଶାଙ୍କ ଶେଖର ପଣ୍ଡା ବିଭିନ୍ନ ତଥ୍ୟ ଓ ଉପାଦାନକୁ ଭିତ୍ତିକରି ଓଡ଼ିଶା ରିଭ୍ୟୁ, ଅଗଷ୍ଟ ୨୦୦୩ ସଂଖ୍ୟାରେ 'Nrusinghnath Temple of Bargarh District' ଶୀର୍ଷକ ପ୍ରବନ୍ଧରେ ବିଶଦ ଆଲୋଚନା କଲାପରେ ଏହା ଅଷ୍ଟମ ଶତାବ୍ଦୀରେ ନିର୍ମିତ ହୋଇଥିବାର ଦର୍ଶାଇଛନ୍ତି । ଅବଶ୍ୟ ଐତିହାସିକ ଶିବ ପ୍ରସାଦ ଦାଶ ତାଙ୍କ 'ସମ୍ବଲପୁର ଇତିହାସ' ପୁସ୍ତକରେ ଏହାର ନିର୍ମାଣ କାଳ ୧୪୭୯ ଖ୍ରୀଷ୍ଟାବ୍ଦ ବୋଲି ମତପ୍ରଦାନ କରିଛନ୍ତି । ଏହି ବିତର୍କିତ ପ୍ରସଙ୍ଗରେ ଏତିକି କୁହାଯାଇପାରେ ଯେ ନିର୍ମାଣ ସମୟ ଯାହା ହେଲେ ମଧ ଏହି ପୁଣ୍ୟପୀଠର ଐତିହାସିକ, ଔଷଧୀୟ ଏବଂ ଧାର୍ମିକ ଗୁରୁତ୍ୱ ଅତୁଳନୀୟ ।

**ଶିଳାଲିପି**

ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିରରେ ମହାରାଜା ବୈଜଳ ଦେବଙ୍କ ଖୋଦିତ ଶିଳାଲିପି ରହିଛି, ଯାହାକି ଓଡ଼ିଆ ଭାଷାର ବିକାଶ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ଭାବରେ ପରିଗଣିତ । ଏହି ଶିଳାଲିପି ସଂପର୍କରେ ସମ୍ବଲପୁର ଜିଲ୍ଲା ଗେଜେଟିୟର୍‌ସ ପୃଷ୍ଠା-୫୩୪-୫୩୫ରେ ଅନେକ ବିଷୟରେ ଉଲ୍ଲେଖ କରାଯାଇଛି । ସେଥିରେ ଉଲ୍ଲେଖ ଥିବା ଚାରିଟି ଧାଡ଼ି ହେଲା-

୧. ନମଃ ଶ୍ରୀ ନୃସିଂହାୟ ସ୍ୱସ୍ତି ଶ୍ରୀ ବିକାରି ନାମ ସମ୍ବସରେ ଚୈତ୍ର ପୌର୍ଣ୍ଣମା ଶୁକ୍ରବାରେ ହସ୍ତାନକ୍ଷତ୍ରେ ପାଟଣା ନଗରସ୍ଥିତ ବସ୍ତ ରାଜଦେବ ରାଜାଙ୍କର ପୁତ୍ର ବୈଜାଳ

୨. ଦେବ ମନୋହର ପୁତ୍ରାର୍ଥେ ଗନ୍ଧମାର୍ଦ୍ଦନ ପର୍ବତେ ବିରାଜ ନରସିଂହନାଥ ସ୍ୱାମୀଙ୍କର ଦେଉଳ ତୋଳାଇଲା । ହୃଦୟ ଭୂଷଣ ରତ୍ନମାନ ଗାଇ ଶତେକ ଲୋହାସିଂଗା

୩. ଗ୍ରାମ ପାଶେ ଆଦି ମେରଡ଼ା ବରିଲୋନା ଲୋଷ୍ଟଦୌ ଭୂମି ରାପଙ୍ଗ ପଦାମ୍ରଷ୍ଟ ଅହଷ୍ଟ ରାତ୍ରିଷ୍ଟ ଉଭୟ ସନ୍ଧ୍ୟା ଧର୍ମେ ପଡ଼ି ଚରୁପାକ ପାଣିଗ୍ରାହୀ ପୁରାଣେ

୪. .... ଦେଲା । ପ୍ରଶସ୍ତିକାର ଅଘା ଶ୍ରୀ ନରସିଂହସ୍ୟ ପ୍ରୀତୟେ ।

ସେ ସଂପର୍କରେ ବ୍ୟାଖ୍ୟା କରିବାକୁ ଯାଇ ଐତିହାସିକ ଶିବ ପ୍ରସାଦ ଦାସ ଲେଖନ୍ତି - 'ଦେବନାଗରୀରୁ ଓଡ଼ିଆ ଲିପିର ବିକାଶ କାଳରେ ସେହି ଶିଳାଲିପି ଖୋଦିତ ହୋଇଥିଲା । ତାହାର ଅଧିକାଂଶ ଲିପି ଓଡ଼ିଆ ହୋଇଥିଲେ ହେଁ ଏବଂ କୌଣସି ଲିପି ପୂର୍ଣ୍ଣ ଦେବନାଗରୀ ନୁହେଁ, କେତେକ ଲିପି ଦେବନାଗରୀର ରୂପକୁ ଅନୁକରଣ କରୁଅଛି, କିନ୍ତୁ ଓଡ଼ିଆ ଲିପି ପରି ଦେଖାଯାଉଅଛି ।' ସାହିତ୍ୟିକ ତଥା ସ୍ତମ୍ଭକାର ପ୍ରଫେସର ନାରାୟଣ ପୃଷ୍ଠେଠ ମଧ 'ଓଡ଼ିଆ ଭାଷାଲିପିର ପ୍ରାଚୀନ ନିଦର୍ଶନ' ଶୀର୍ଷକ ପ୍ରବନ୍ଧରେ ପ୍ରାୟ ସମାନ ମତବ୍ୟକ୍ତ କରିଛନ୍ତି । ତାଙ୍କ ମତାନୁଯାୟୀ- 'ଓଡ଼ିଆ ଭାଷା କ୍ଷେତ୍ରରେ ଦେବନାଗରୀ ଲିପିରୁ ନିର୍ଦ୍ଦିଷ୍ଟ ରୂପ ନେବା ପାଇଁ ଚେଷ୍ଟା କରୁଥିବା ଭ୍ରୂଣାବସ୍ଥାର ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଲିପି ସେହି ଶିଳାଲେଖ ବହନ କରିଛି ବୋଲି ଅନେକ ଗବେଷକଙ୍କ ମତ । ଡଃ ଏଲ୍.ପି. ପାଣ୍ଡେଙ୍କ ମତ ଉଦ୍ଧାର କରି ଡଃ କୁଞ୍ଜ ବିହାରୀ ତ୍ରିପାଠୀ କହନ୍ତି ଯେ ସେହି ଶିଳାଲେଖର ସମୟ ୧୪୧୩ ଖ୍ରୀଷ୍ଟାବ୍ଦ । ସେହି ଶିଳାଲେଖର ଅକ୍ଷର ଆକୃତିରୁ ଶିଳାଲେଖର ସମୟ ଚତୁର୍ଥ ଭାନୁଦେବଙ୍କ ରାଜତ୍ୱକାଳୀନ । ସୀମାଞ୍ଚଳରୁ ମିଳିଥିବା ଏକ ତେଲଗୁ ଶିଳାଲେଖରେ ଉଲ୍ଲିଖିତ ଥିବା ପାର୍ବତୀ ମହାଦେଇ ବିଝଲଦେବ (ବା ବୈଜଳ ଦେବ)ଙ୍କ କନ୍ୟା ଅଟନ୍ତି । ସ୍ୱାମୀ କାହ୍ନୁପିଲାଇଙ୍କ ଗଣନା ଅନୁସାରେ ସେଇ ଶିଳାଲେଖର ଶୁଭଦିନଟି ୧୪୧୩ ଖ୍ରୀ: ମାର୍ଚ୍ଚ ୧୭ ତାରିଖ ବୋଲି ଐତିହାସିକ ଡଃ ଯଜ୍ଞ କୁମାର ସାହୁ ଗ୍ରହଣ କରିଛନ୍ତି ।' ସେହି ଶିଳାଲିପିର ମହତ୍ୱ ପ୍ରତିପାଦନ କରିବାକୁ ଯାଇ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଯଥାର୍ଥରେ ବର୍ଣ୍ଣନା କରିଛନ୍ତି - 'ନରସିଂହନାଥ ଶିଳାଲିପି ଓଡ଼ିଆ ଭାଷା ଓ ଲିପିର ପ୍ରାଚୀନତମ ନିଦର୍ଶନ । ଏହା ସମଗ୍ର ଓଡ଼ିଶାର ଏକ ସାଂସ୍କୃତିକ ଐତିହ୍ୟ ଓ ସମ୍ପଦ ରୂପେ ବିବେଚିତ ।' ବାସ୍ତବିକ ଏଠାରେ ଗୋଟିଏ ବିଷୟ ଅତ୍ୟନ୍ତ ସ୍ପଷ୍ଟ ସେ ଐତିହାସିକ ଓ ଆଧ୍ୟାତ୍ମିକ ଦିଗରୁ କେବଳ ଶ୍ରୀ ଶ୍ରୀ ନୃସିଂହନାଥ ପୀଠ ପ୍ରସିଦ୍ଧ ନୁହେଁ,

ବରଂ ଓଡ଼ିଆ ଭାଷା ଓ ଲିପିର ବିକାଶ ମାଧ୍ୟମରେ ଓଡ଼ିଶାର ବୌଦ୍ଧିକ ଇତିହାସରେ ମଧ୍ୟ ଏକ ସୁବର୍ଣ୍ଣ ଅଧ୍ୟାୟ ଅଟେ ।

**ସମନ୍ୱୟବାଦୀ ଅଭିବ୍ୟକ୍ତି**

ନୃସିଂହନାଥ ପୀଠ ସମ୍ବନ୍ଧୀୟ ଉଭୟ କିମ୍ବଦନ୍ତୀ ଓ ଇତିହାସରେ ସମନ୍ୱୟ ଭାବନାର ପ୍ରତିଫଳନ ଘଟିଛି । ସେଠାରେ ଆଦିବାସୀ ଓ ଆର୍ଯ୍ୟ ପରମ୍ପରାର ମିଳନଦ୍ୱାରା ଏକ ନବ୍ୟ ନୂତନ ସମନ୍ୱୟବାଦୀ ସଂସ୍କୃତିର ଅଭ୍ୟୁଦୟ ଘଟିଛି । ଯମୁନା କନ୍ଧୁଣୀଦ୍ୱାରା ପ୍ରଭୁ ମାର୍ଜାରକେଶରୀଙ୍କ ମୂର୍ତ୍ତି ଆବିଷ୍କୃତ ହେବା ଏବଂ କନ୍ଧ ଜନଜାତିର ଲୋକଙ୍କଦ୍ୱାରା ପୂଜାର୍ଚ୍ଚନାକୁ ଆର୍ଯ୍ୟମାନଙ୍କଦ୍ୱାରା ସସମ୍ମାନେ ଗ୍ରହଣ କରାଯିବା ଫଳରେ ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତି ମଧ୍ୟରେ ଯେଉଁ ସଂପର୍କର ସ୍ୱର୍ଣ୍ଣସେତୁ ନିର୍ମାଣ ହୋଇଛି, ତାହାଦ୍ୱାରା ସମଗ୍ର ଭାରତବର୍ଷ ତଥା ବିଶ୍ୱମାନବିକତା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ ଘଟିଛି । ପୁନଶ୍ଚ ସେହି ପୀଠ ଧାର୍ମିକ ସଂହତିର ମଧ୍ୟ ସଙ୍କେତ ପ୍ରଦାନ କରେ । ଶୈବ, ବୈଷ୍ଣବ ଓ ବୌଦ୍ଧ ଧର୍ମର ଅପୂର୍ବ ସମ୍ମେଳନର ସ୍ୱାକ୍ଷର ବହନ କରିଛି । ନୃସିଂହନାଥ ମନ୍ଦିର ନିର୍ମାଣ ହେବା ପୂର୍ବରୁ ସେଠାରେ ଏକ ପ୍ରସିଦ୍ଧ ବୌଦ୍ଧ ପୀଠ ଥିଲା ଯେଉଁଠି ବିଶିଷ୍ଟ ବୌଦ୍ଧ ଦାର୍ଶନିକ ନାଗାର୍ଜୁନ ଏକଦା ସାଧନାରତ ଥିଲେ । ଏପରିକି ଗୌତମୀ ପୁତ୍ର ରାଜା ସାତକର୍ଣ୍ଣ ତାଙ୍କ ନିମନ୍ତେ ସାଂଘାରାମଟିଏ ଗଢ଼ିଥିବାର ସୂଚନା ମିଳେ । କେଦାରନାଥ ଗବେଷଣା ପ୍ରତିଷ୍ଠାନଦ୍ୱାରା ସଂପାଦିତ ଓଡ଼ିଶାର ବୌଦ୍ଧଧର୍ମ ଓ ସଂସ୍କୃତି ଶୀର୍ଷକ ପୁସ୍ତକ ତଥା ଡଃ ନବୀନ କୁମାର ସାହୁ ଓ ଚାର୍ଲସ ଫାବ୍ରିଙ୍କ ଐତିହାସିକ ମତ ଏହି ତଥ୍ୟ ଓ ଯୁକ୍ତିକୁ ସ୍ୱୀକୃତି ଦିଏ । ପୁନଶ୍ଚ ଚୀନ ପରିବ୍ରାଜକ ହୁଏନ ସାଂ ମଧ୍ୟ ଏହି ସ୍ଥାନ ପରିଭ୍ରମଣ କରି ଗନ୍ଧମାର୍ଦ୍ଦନକୁ 'ପ-ଲୋ-ମୋ-ଲୋ-କି-ଲି' (ପରିମଳଗିରି) ଭାବରେ ବର୍ଣ୍ଣନା କରିବା ସହ ସେଠାରେ ଅତୀତରେ ବୌଦ୍ଧଧର୍ମର ଏକ ପ୍ରସିଦ୍ଧ ସାଧନା କେନ୍ଦ୍ର ଥିବାର ବର୍ଣ୍ଣନା କରିଛନ୍ତି । ପୁଣି କିମ୍ବଦନ୍ତୀକୁ ବିଚାରକୁ ନେଲେ ବୈଷ୍ଣବ ଓ ଶୈବ ସଂପ୍ରଦାୟର ମିଳନ ଘଟିଛି ଏବଂ ଯଥାର୍ଥରେ ଗନ୍ଧମାର୍ଦ୍ଦନ ପର୍ବତର ଅନ୍ୟପଟେ 'ହରି-ଶଙ୍କର' ମନ୍ଦିରର ପ୍ରତିଷ୍ଠା ହୋଇଛି । ଏ ସଂପର୍କରେ ପ୍ରଫେସର ନାରାୟଣ ପୃଷେଠ (୨୦୦୦)ଙ୍କ ମନ୍ତବ୍ୟ ଅତ୍ୟନ୍ତ ପ୍ରାସଙ୍ଗିକ ମନେହୁଏ । ତାଙ୍କ ଅନୁପମ ଭାଷାରେ - 'ନରସିଂହନାଥଙ୍କ ସଂପର୍କରେ ମୁଖ୍ୟତଃ ଦୁଇଟି ତତ୍ତ୍ୱର ଅବଧାରଣା କରାଯାଇଛି । ଗୋଟିଏ ହେଉଛି, ମାର୍ଜାରକେଶରୀ ମୁଖ୍ୟତଃ ଏକ ଆଦିବାସୀ ଦେବତା । ପରବର୍ତ୍ତୀ କାଳରେ ହିନ୍ଦୁ ବୈଷ୍ଣବ ମତବାଦ ତାଙ୍କ ଉପରେ ଆରୋପିତ ହୋଇ 'ବିଡ଼ାଳ ନୃସିଂହ'ରୁ 'ନୃସିଂହନାଥ' ହୋଇଗଲେ । ବୈଷ୍ଣବ ମତବାଦର ଜୟଗାନ ଲାଗି ଶାକ୍ତ ଧର୍ମର ପରାଜୟ ସ୍ୱୀକାର କରାଯାଇଛି କନ୍ଧକବି ଯୁଗ ଦାସଙ୍କ ଶ୍ରୀ ନୃସିଂହ ଚରିତ କାବ୍ୟରେ (ଅଷ୍ଟାଦଶ ଶତାବ୍ଦୀରେ ଲିଖିତ) ।' କିମ୍ବଦନ୍ତୀ ଓ ଐତିହାସିକ ତଥ୍ୟାବଳୀରୁ ସ୍ପଷ୍ଟ ସୂଚୀତ ହୁଏ ଯେ ଧାର୍ମିକ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଶ୍ରୀ ଶ୍ରୀ ନୃସିଂହନାଥ ପୀଠର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ଅବିସ୍ମରଣୀୟ ନିଶ୍ଚୟ । ବାସ୍ତବିକ ସେହି ମହାଧାମରେ ସଂହତି ଓ ମିଳନର ଏକ ମହାରହସ୍ୟ ହିଁ ଉନ୍ମୋଚିତ ।

**ସାମ୍ୟବାଦର ମନ୍ତ୍ରପାଠ**

ଶ୍ରୀ ନୃସିଂହନାଥ ପୀଠର ଅନ୍ୟତମ ଗୌରାବାନ୍ୱିତ ଦିଗ ହେଉଛି ସେଠାକାର ପରମ୍ପରାରେ ଆଦିବାସୀ ଜନଜାତିଙ୍କର ଗୁରୁତ୍ୱାରୋପ । ସଂପ୍ରତି ଜାତି ଓ ଧର୍ମକୁ ନେଇ ବହୁଧା ବିଭାଜିତ ଭାରତୀୟ ସମାଜକୁ ଏହା ଏକ ନୂତନ ଦିଗଦର୍ଶନ ଦେଇଥାଏ । ସେଠିକାର ପରମ୍ପରାରେ ଯମୁନା କନ୍ଧୁଣୀକୁ ଯେଉଁଭଳି ଉଚ୍ଚସ୍ଥାନ ଦିଆଯାଇଅଛି ତାହା ଅତ୍ୟନ୍ତ ମହତ୍ ଭାବନାର ପରିଚୟ । ଶାବର ଶ୍ରୀକ୍ଷେତ୍ରରେ ଶବରମାନଙ୍କଦ୍ୱାରା ଶ୍ରୀଜଗନ୍ନାଥଙ୍କ ପୂଜାର୍ଚ୍ଚନା ଭଳି ସେଠାରେ ମଧ୍ୟ କନ୍ଧ ଜନଜାତିଦ୍ୱାରା ଯେଉଁ ପୂଜା କରିବାର ପରମ୍ପରା ରହିଛି, ତାହା ସ୍ପଷ୍ଟ ସୂଚୀତ କରେ ଯେ ଭଗବାନ କେବଳ ଭକ୍ତର ଏବଂ ସେଥିରେ କୌଣସି ଜାତି ବା ଗୋଷ୍ଠୀର ଅଳ୍ପ କିମ୍ବା ଅଧିକ ଅଧିକାର ନାହିଁ (ଅବଶ୍ୟ ଆଜିକାଲି ଅବିବାହିତ ବ୍ରାହ୍ମଣ ବାଳକମାନେ ପୂଜା କରନ୍ତି) । ବାସ୍ତବିକ ନୃସିଂହନାଥ ମନ୍ଦିରରେ କୌଣସି ଜାତିର ପ୍ରାଧାନ୍ୟକୁ ଗୁରୁତ୍ୱ ଦିଆନଯାଇ ପ୍ରତ୍ୟହ ସାମ୍ୟବାଦର ମହାମନ୍ତ୍ର ହିଁ ଉଚ୍ଚାରିତ ହୋଇଥାଏ । ଏକ ଜାତି-ହୀନ ମାନବ ସମାଜର ପରିକଳ୍ପନା ହିଁ ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିରର ଧାର୍ମିକ ଅଭିବ୍ୟକ୍ତି । ଯଥାର୍ଥରେ ସେଠାରେ ବିନା ମୂଲ୍ୟରେ ପ୍ରତିଦିନ ସମସ୍ତଙ୍କୁ ହରିହର ପଙ୍ଗତ ପ୍ରଦାନ କରାଯିବା ସାମାଜିକ ନ୍ୟାୟର ଏକ ସୁନ୍ଦର ବାର୍ତ୍ତା ।

**ଧାର୍ମିକ ଗୁରୁତ୍ୱ**

ଧର୍ମ ଦୃଷ୍ଟିରୁ ମଧ୍ୟ ଗନ୍ଧମାର୍ଦ୍ଦନ ପର୍ବତର ଗୁରୁତ୍ୱ ରହିଛି । ସେହି ପୀଠକୁ ଧାର୍ମିକ ସମନ୍ୱୟର ପୀଠ କୁହାଯାଇପାରେ । ଡଃ ଭକ୍ତ ପୁରନ ସାହୁଙ୍କ 'ସ୍ୱାଧୀନତା ସଂଗ୍ରାମରେ ବୋଡ଼ାସମ୍ବରର ଭୂମିକା' ପୁସ୍ତକର ପୃଷ୍ଠା-୯ରେ ଉଲ୍ଲେଖ ଅଛି ଯେ, 'ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀ ପୂର୍ବରୁ ପ୍ରସିଦ୍ଧିଲାଭ କରିଥିବା ବୌଦ୍ଧକ୍ଷେତ୍ର ପରିମଳଗିରି ବା ଗନ୍ଧଗିରି ପର୍ବତାଞ୍ଚଳରେ ତାନ୍ତ୍ରିକ ବୌଦ୍ଧଧର୍ମର 'ଚକ୍ରସମ୍ବର' ତନ୍ତ୍ରର ଆରାଧ ଦେବତା 'ବୁଦ୍ଧ ସମ୍ବର'ଙ୍କ ସାଧନା

ଓ ଉପାସନା ଖୁବ୍ ଲୋକପ୍ରିୟ ହୋଇଥିଲା ଏବଂ ତଦନୁସାରେ ସେ ଅଞ୍ଚଳର ନାମ ମଧ୍ୟ ସେଇୟା ହୋଇଥିଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବୁଦ୍ଧଙ୍କୁ 'ବୁଢ଼ାରାଜା' ନାମରେ ପୂଜା କରିବା ପରମ୍ପରା ରହି ଆସିଛି । **ପରିମଳଗିରି ବା ଗନ୍ଧଗିରିର ଆଦିବାସୀ ଜନଗୋଷ୍ଠୀଙ୍କ ମୁଖରେ ବୁଦ୍ଧ ସୟର 'ବୁଢ଼ାସୟର' ନାମରେ ପରିଚିତ ।' ସଂପ୍ରତି ପଶ୍ଚିମ ଓଡ଼ିଶା ଓ ଛତିଶଗଡ଼ର ହିନ୍ଦୁଧର୍ମାବଲମ୍ବୀଙ୍କ ପାଇଁ ତାହା ଏକ ମହାନ ତୀର୍ଥ ଅଟେ । ସେମାନେ ସେଠାକାର ଝରଣା ସମୂହକୁ ଓଡ଼ିଶାର ଗଙ୍ଗାନଦୀ ବୋଲି ବିବେଚନା କରନ୍ତି । ସେଠାକୁ ତୀର୍ଥ ଉଦ୍ଦେଶ୍ୟରେ ତଥା ଅସ୍ଥି ବିସର୍ଜନ ପାଇଁ ଅଗଣିତ ଶ୍ରଦ୍ଧାଳୁ ଆସିଥାନ୍ତି ।** ନୃସିଂହନାଥ ପୀଠର ଜଳପ୍ରପାତରେ ସ୍ନାନ କଲେ ପାପ ହରଣ ହୁଏ ବୋଲି ଭକ୍ତଙ୍କ ବିଶ୍ୱାସ । ପୁନଶ୍ଚ ଔଷଧୀୟ ଗଛଲତା ସବୁରୁ ନିଃସୃତ ଝରଣାର ପାଣିରେ ମଧ୍ୟ ଔଷଧୀୟ ଗୁଣ ଥିବାର କୁହାଯାଏ ଏବଂ ସେଥିରେ ସ୍ନାନ କଲେ ଅନେକ ରୋଗରୁ ମୁକ୍ତି ମିଳିଥାଏ । ବୈଶାଖ ଚତୁର୍ଦ୍ଦଶୀ ଉପଲକ୍ଷେ ସେଠାରେ ଆୟୋଜିତ ହେଉଥିବା ମେଳାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ହୋଇଥାଏ । ନୃସିଂହନାଥ ଆଜି ଏକ ମହତ୍ୱପୂର୍ଣ୍ଣ ତୀର୍ଥକ୍ଷେତ୍ର ତଥା ଏକ ଧର୍ମକ୍ଷେତ୍ର ପାଲଟିଛି ।

### ଔଷଧୀୟ ବିଶେଷତ୍ୱ

ରାମ-ରାବଣ ଯୁଦ୍ଧ ସମୟରେ ଆହତ ଲକ୍ଷ୍ମଣଙ୍କ ଚିକିତ୍ସା ପାଇଁ ବିଶଲ୍ୟକରଣୀର ଆବଶ୍ୟକତା ପଡ଼ିଥିଲା । ଏଥିପାଇଁ ହନୁମାନ ବିନ୍ଧ୍ୟ ପର୍ବତ ଧରି ଆସୁଥିବା ସମୟରେ ତାହାର କିଛି ଅଂଶ ପଡ଼ିଯାଇଥିଲା, ଯାହାକି ପରବର୍ତ୍ତୀ କାଳରେ କପିଳମୁନିଙ୍କଦ୍ୱାରା ଗନ୍ଧମାର୍ଦ୍ଦନ ପାହାଡ଼ ଭାବରେ ନାମିତ କରାଗଲା । ସେହି ସମଗ୍ର ପର୍ବତାଞ୍ଚଳ ଔଷଧୀୟ ବୃକ୍ଷଲତାରେ ପରିପୂର୍ଣ୍ଣ । ସାହିତ୍ୟିକ ଓ ଗବେଷକ ଡଃ ରଶ୍ମି ରଞ୍ଜନ ମହାନ୍ତି (୨୦୦୦)ଙ୍କ ମତରେ ତାହା ପ୍ରାୟ '୨୭୦୦ ପ୍ରକାର ଔଷଧୀୟ ବୃକ୍ଷଲତାର ଅମାପ ଭଣ୍ଡାର ।' ସଂପ୍ରତି ସେଠାରେ ଏକ ଆୟୁର୍ବେଦିକ ମହାବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠିତ ହୋଇଛି । ସେହି ଦିଗ ପ୍ରତି ଅଧିକ ଧ୍ୟାନ ଦେବାର ଆବଶ୍ୟକତା ରହିଛି ।

### ପର୍ଯ୍ୟଟନ ସମ୍ଭାବନା

ପର୍ଯ୍ୟଟନ ଦୃଷ୍ଟିକୋଣରୁ ନୃସିଂହନାଥ ପୀଠର ଏକ ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଛତିଶଗଡ଼ ଓ ଓଡ଼ିଶାର ବିଭିନ୍ନ କୋଣ-ଅନୁକୋଣରୁ ଅସଂଖ୍ୟ ପର୍ଯ୍ୟଟକ ସେଠାକୁ ଆସିଥାନ୍ତି । ସେଠାକାର ପ୍ରାକୃତିକ ଶୋଭାରାଶି ଅତ୍ୟନ୍ତ ମନୋରମ । ପାହାଡ଼, ଝରଣା ପ୍ରଭୃତି ପ୍ରାକୃତିକ ସମ୍ଭାର, ସ୍ୱତନ୍ତ୍ର ଶୈଳୀରେ ନିର୍ମିତ ମନ୍ଦିର, ଶିଳାଲେଖ ଆଦି ସବୁର ସମନ୍ୱୟରେ ସୌନ୍ଦର୍ଯ୍ୟର ଏକ ଅପୂର୍ବ ସମାବେଶ ସୃଷ୍ଟି ହୋଇଛି । ଶ୍ରୀ ଶ୍ରୀ ନୃସିଂହନାଥ ପୀଠରୁ ପାହାଡ଼ ଆରପଟେ ଥିବା ହରିଶଙ୍କର ମନ୍ଦିର ପର୍ଯ୍ୟନ୍ତ 'ରୋପୱେ'ର ବ୍ୟବସ୍ଥା ହୋଇପାରିଲେ ପର୍ଯ୍ୟଟନ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ସ୍ଥାପିତ ହୁଅନ୍ତା । ପୁନଶ୍ଚ 'ନୃସିଂହନାଥପତୋରା ନଦୀବନ୍ଧ-ହରିଶଙ୍କର'କୁ ନେଇ ପର୍ଯ୍ୟଟନ କ୍ଷେତ୍ରରେ ଓଡ଼ିଶାର ଦ୍ୱିତୀୟ ସ୍ୱର୍ଣ୍ଣ ତ୍ରିଭୁଜ ବିକଶିତ କରାଯାଇପାରନ୍ତା । ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ପକ୍ଷରୁ ପର୍ଯ୍ୟଟକମାନଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ ଲିଫ୍‌ଲେଟରେ ନୃସିଂହନାଥ ସଂପର୍କିତ ଚମତ୍କାର ବର୍ଣ୍ଣନା କରାଯାଇଛି । ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ଏକ ମହତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିବାର ସମସ୍ତ ଯୋଗ୍ୟତା ଓ ସମ୍ଭାବନା ସତ୍ତ୍ୱେ ଭିତ୍ତିଭୂମି ଏବଂ ପ୍ରଚାର ପ୍ରସାରର ଅଭାବ ଯୋଗୁଁ ପ୍ରକୃତି, ଆଧ୍ୟାତ୍ମିକତା ଓ ଐତିହ୍ୟର ସମନ୍ୱୟରେ ସୃଷ୍ଟି ସେହି ଅପରୂପ ସୌନ୍ଦର୍ଯ୍ୟର ମହାକ୍ଷେତ୍ର ଆଜି ଅବହେଳିତ । ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଶୁଭଦୃଷ୍ଟି ତା'ଉପରେ ପଡ଼ିବା ଉଚିତ ।

ଶ୍ରୀ ଶ୍ରୀ ନୃସିଂହନାଥ ପୀଠରୁ ପାହାଡ଼ ଆରପଟେ ଥିବା ହରିଶଙ୍କର ମନ୍ଦିର ପର୍ଯ୍ୟନ୍ତ 'ରୋପୱେ'ର ବ୍ୟବସ୍ଥା ହୋଇପାରିଲେ ପର୍ଯ୍ୟଟନ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ସ୍ଥାପିତ ହୁଅନ୍ତା । ପୁନଶ୍ଚ 'ନୃସିଂହନାଥପତୋରା ନଦୀବନ୍ଧ-ହରିଶଙ୍କର'କୁ ନେଇ ପର୍ଯ୍ୟଟନ କ୍ଷେତ୍ରରେ ଓଡ଼ିଶାର ଦ୍ୱିତୀୟ ସ୍ୱର୍ଣ୍ଣ ତ୍ରିଭୁଜ ବିକଶିତ କରାଯାଇପାରନ୍ତା ।

### ବିବର୍ତ୍ତନ ପ୍ରକ୍ରିୟାର ଆଧ୍ୟାତ୍ମିକ ସଙ୍କେତ

ଚାର୍ଲସ ଡାରୱିନ ମଣିଷର ଉତ୍ପତ୍ତି ତଥା ତା'ର ବର୍ତ୍ତମାନ ସ୍ୱରୂପ ଉପରେ ଗବେଷଣା କରି ବିବର୍ତ୍ତନବାଦ (Theory of evolution)ର ପ୍ରବର୍ତ୍ତନ କରିଛନ୍ତି । ତାଙ୍କ ମତ ଅନୁସାରେ ବର୍ତ୍ତମାନର ମାନବ ବିବର୍ତ୍ତନର ଏକ ଦୀର୍ଘ ପ୍ରକ୍ରିୟାରେ ଗତିକରି ଧୀର ଓ କ୍ରମବିକାଶ ପ୍ରକ୍ରିୟାରେ ବର୍ତ୍ତମାନ ସ୍ଥିତିକୁ ପହଞ୍ଚିଛି ଏବଂ ବର୍ତ୍ତମାନର ମଣିଷ ହେଉଛି ସର୍ବଶ୍ରେଷ୍ଠ ଜୀବ । ଡାରୱିନଙ୍କ ବିବର୍ତ୍ତନବାଦ ସମ୍ବନ୍ଧୀୟ ମତାମତକୁ ସର୍ବସମ୍ମତିକ୍ରମେ ସମଗ୍ର ବିଶ୍ୱରେ ସ୍ୱୀକୃତି ପ୍ରଦାନ କରାଯାଇଛି । ବିବର୍ତ୍ତନବାଦ ସମ୍ପର୍କିତ ଏହି ବୈଜ୍ଞାନିକ ଅନୁଚିନ୍ତାର ବହୁପୂର୍ବରୁ ଜୀବଜଗତର ଉତ୍ପତ୍ତି ଓ କ୍ରମ ବିକାଶ ସଂପର୍କରେ ଅବତାରବାଦର ଅବତାରଣା ରହିଛି । ହିନ୍ଦୁ ଦର୍ଶନରେ ଅବତାରବାଦ ପ୍ରତି ପୂର୍ଣ୍ଣ ବିଶ୍ୱାସ ପ୍ରକଟ କରାଯାଇଛି । ଏହାର ଅର୍ଥ ହେଲା ଯେ ଭଗବାନ ବିଭିନ୍ନ ରୂପରେ

ବିଭିନ୍ନ ସମୟରେ ଧରାପୃଷ୍ଠରେ ଜନ୍ମ ନେଇଛନ୍ତି । ବର୍ତ୍ତମାନର ଆଲୋଚନାରେ ଏହି ଅବତାରବାଦକୁ ଡାରଓ୍ୱିନଙ୍କ ବିବର୍ତ୍ତନ ତତ୍ତ୍ୱ ସହିତ ତୁଳନା କରାଯାଇ ଶ୍ରୀ ଶ୍ରୀ ନୃସିଂହନାଥ ପୀଠର 'ମାର୍ଜାରକେଶରୀ' ଭଗବାନଙ୍କୁ ଏକ ସ୍ୱତନ୍ତ୍ର ଅବତାର ଭାବରେ ଯୁକ୍ତି ଉପସ୍ଥାପନ କରାଯାଇଛି । ବିଭିନ୍ନ ଅବତାର ମାଧ୍ୟମରେ ଜୀବଜଗତର କ୍ରମବିକାଶ ସଂପର୍କିତ ଡାରଓ୍ୱିନ ତତ୍ତ୍ୱକୁ ଆଲୋଚନା କରାଯିବା ପୂର୍ବରୁ ନୃସିଂହନାଥ ମନ୍ଦିର ଭିତରେ ପୂଜା ପାଉଥିବା 'ମାର୍ଜରାକେଶରୀ' ଭଗବାନଙ୍କ ସ୍ୱରୂପ ସଂପର୍କରେ ଉଲ୍ଲେଖ କରିବା ଅତ୍ୟନ୍ତ ପ୍ରାସଙ୍ଗିକ ମନେ ହୁଏ । ପୁଣି ଏଠାର କନ୍ଧ କବି ଯୁଗ ଦାସଙ୍କ ଶ୍ରୀ ନୃସିଂହ ଚରିତରେ ମାର୍ଜାରକେଶରୀଙ୍କ ସଂପର୍କିତ ବର୍ଣ୍ଣନା ମଧ୍ୟ ଆବଶ୍ୟକ ମନେ ହୁଏ । ତାଙ୍କ ଉକ୍ତିକୁ ଉଦ୍ଧାର ପୂର୍ବକ ନାରାୟଣ ପୃଷେଠ୍ (୨୦୦୮) ବର୍ଣ୍ଣନା କରନ୍ତି- 'ଏଠାରେ ନୃସିଂହ ମହାପ୍ରଭୁ ଦଶ ଅବତାର ବର୍ଣ୍ଣିତ ହିରଣ୍ୟକଶିପୁକୁ ବଧ କରୁଥିବା ଉଗ୍ର ନରସିଂହ ନୁହନ୍ତି । ଯେଉଁ ମୂର୍ତ୍ତିଟି ଏଠାରେ ପୂଜା ପାଆନ୍ତି ତାହା ଏକ ଆଦିବାସୀ ପରିକଳ୍ପିତ ଦେବତା ହୋଇଥିବା ଯୋଗୁଁ ଶ୍ରୀଜଗନ୍ନାଥଙ୍କ ଭଳି ରହସ୍ୟମୟ । ବେଢ଼ା ଓ ମନ୍ଦିର ଦେହରେ ଯେଉଁ ଅନ୍ୟ ତିନିଟି ମୂର୍ତ୍ତି ଦେଖାଯାଆନ୍ତି, ସେଥିରୁ ଦୁଇଟି ମୂର୍ତ୍ତି ଓଡ଼ିଶାର ଅନ୍ୟ ମନ୍ଦିରରେ ମିଳନ୍ତି । ମାତ୍ର ଜଟାନୃସିଂହ (ପୁରୁଷୋତ୍ତମ ନୃସିଂହ) ମୂର୍ତ୍ତିଟି ଦଣ୍ଡାୟମାନ ଅବସ୍ଥାରେ ଓ ଇରାନୀୟ ଶୈଳୀରେ ନିର୍ମିତ ଜୋତା ପିନ୍ଧିଛନ୍ତି । ପୂଜିତ ଦେବତାଙ୍କ ମୂର୍ତ୍ତିର ମୁହଁ ମାର୍ଜାରର ଓ ଦେହ କେଶରୀ (ସିଂହ)ର । ତେଣୁ ଏଠାରେ ସେ ମାର୍ଜାରକେଶରୀ ବା ବିଡ଼ାଳ ନୃସିଂହ ଭାବରେ ପୂଜା ପାଆନ୍ତି ।' ତେବେ ଉପରୋକ୍ତ ଆଲୋଚନାରେ ମାର୍ଜାରକେଶରୀଙ୍କ ସଂପର୍କରେ ଏକ ପୂର୍ଣ୍ଣାଙ୍ଗ ବର୍ଣ୍ଣନା ପ୍ରଦାନ କରାଯାଇଛି । ଗୋଟିଏ ବିଷୟ ଅତ୍ୟନ୍ତ ସ୍ପଷ୍ଟ ଯେ, ଭଗବାନ ମାର୍ଜାରକେଶରୀ ବିଷ୍ଣୁଙ୍କ ଏକ ଅବତାର ଯେ ବିରାଡ଼ି ମୁଣ୍ଡ ଓ ସିଂହ ଶରୀର ଧାରଣ କରିଛନ୍ତି ।

ଏବେ ଅବତାରବାଦର ବିଷଦ ଆଲୋଚନା କରାଯାଉ । ଭଗବାନ ସର୍ବପ୍ରଥମେ ମତ୍ସ୍ୟ ଅବତାର ଗ୍ରହଣ କରିଥିବା ହିନ୍ଦୁ ଦର୍ଶନରେ ଉଲ୍ଲିଖିତ । ଅର୍ଥାତ୍ ଭଗବାନ ମତ୍ସ୍ୟ ରୂପରେ ଜନ୍ମ ଗ୍ରହଣ କରିଥିଲେ । ଅନ୍ୟପକ୍ଷରେ ବୈଜ୍ଞାନିକ ଦୃଷ୍ଟିକୋଣରୁ ବ୍ୟାଖ୍ୟା କଲେ ମତ୍ସ୍ୟ ଏକ ଜଳଚର ପ୍ରାଣୀ । ଅର୍ଥାତ୍ ମତ୍ସ୍ୟ ଅବତାର ସମଗ୍ର ଜଳଚର ପ୍ରାଣୀମାନଙ୍କ ପ୍ରତିନିଧିତ୍ୱ କରନ୍ତି । ବିବର୍ତ୍ତନ ପ୍ରକ୍ରିୟାରେ ଜୀବଜଗତର କ୍ରମବିକାଶ ଘଟିଛି । ପରମପୁରୁଷ ଦ୍ୱିତୀୟ ଅବତାର ଲାଭ କରିଛନ୍ତି କଇଁଛ ରୂପରେ । ଏପରି ଏକ ଜୀବର ଉତ୍ପତ୍ତି ଘଟିଛି ଯେ କି ଉଭୟ ଜଳ ଓ ସ୍ଥଳରେ ବାସ କରିପାରେ । ତୃତୀୟ ଅବତାର ହେଉଛି 'ବରାହ' - ଅର୍ଥାତ୍ ଏକ ହିଂସ୍ର ପଶୁ ଯେ କ୍ଷିପ୍ର ଗତିରେ ଦୌଡ଼ି ପାରେ ଏବଂ କଇଁଛ ଅପେକ୍ଷା ଅଧିକ ଶକ୍ତ ଓ ବିକଶିତ । ଏହାକୁ ଜୀବଜଗତରେ କ୍ରମବିକାଶର ତୃତୀୟ ପର୍ଯ୍ୟାୟ ମଧ୍ୟ କୁହାଯାଇପାରେ । ଏହାପରେ ପ୍ରଭୁ ନୃସିଂହ ଅବତାର ଗ୍ରହଣ କରିଥିବାର ସୂଚନା ରହିଛି । ଅର୍ଥାତ୍ ମାନବ ସ୍ୱରୂପର ପ୍ରାରମ୍ଭିକ ପର୍ଯ୍ୟାୟ । କାରଣ ନୃସିଂହ ସ୍ୱରୂପକୁ ବିଜ୍ଞାନ ଦୃଷ୍ଟିରୁ ଦେଖିଲେ ଅଧା ମଣିଷ ଓ ଅଧା ପଶୁର ଆକୃତି । ତା'ପରେ 'ବାମନ' ଅବତାର- ଯାହାକି ଏକ ମାନବ ଶରୀରର ସ୍ୱରୂପ ପ୍ରଦାନ କରେ । ଏହାପରେ 'ପର୍ଶୁରାମ' - ଅର୍ଥାତ୍ ଏପରି ଏକ ମାନବର ବିକାଶ ଘଟିଛି ଯାହାଙ୍କଠାରେ ପ୍ରାଣଶକ୍ତିର ପ୍ରାଚୁର୍ଯ୍ୟ ରହିଛି । କିନ୍ତୁ ୨୧ ଥର କ୍ଷତ୍ରୀୟ ଅର୍ଥାତ୍ ବୀର ଶୂନ୍ୟ କରିଛନ୍ତି ଧରାପୃଷ୍ଠକୁ, ଏପରିକି ନିଜ ମା'ଙ୍କୁ ସେ ମାରିଥିବା ପୁରାଣରେ ବର୍ଣ୍ଣିତ ଅଟେ । ଏଠାରେ ସ୍ପଷ୍ଟଯେ 'ପର୍ଶୁରାମ' ଅବତାର ଏକ ଶକ୍ତିଶାଳୀ ଅଥଚ ବିବେକ ଶୂନ୍ୟ ମାନବ ସ୍ୱରୂପର ପରିଚାୟକ । ପରବର୍ତ୍ତୀ ଅବତାର 'ଶ୍ରୀରାମ' ରୂପରେ ଅର୍ଥାତ୍ ଏକ ନୀତି-ଆଦର୍ଶ ସଂପନ୍ନ ମାନବର ଅବତାର । ନୈତିକତାର ଅଭ୍ୟୁଦୟ । ଶ୍ରୀରାମଙ୍କ ପରେ 'ଶ୍ରୀକୃଷ୍ଣ/ ବଳରାମ' ଅବତାରରେ ଭଗବାନଙ୍କ ଆବିର୍ଭାବ ଘଟିଛି । ଅର୍ଥାତ୍ ମାନବର ଆଧ୍ୟାତ୍ମିକ ଚେତନାର ବିକାଶ ହୋଇଛି । ଏକ ଆଧ୍ୟାତ୍ମିକ ଚେତନାସଂପନ୍ନ ମଣିଷର କ୍ରମ ବିକାଶର ସୂଚନା । ଏଠାରେ ଆତ୍ମା-ପରମାତ୍ମାର ମିଳନ ରହସ୍ୟ । ଏଠି ଆସିଛି ବିଶ୍ୱହିତ ପ୍ରସଙ୍ଗ । ମହାଭାରତ ଯୁଦ୍ଧରେ ଯେତେବେଳେ ଅର୍ଜୁନ ନିଜ ସଂପର୍କୀୟଙ୍କ ବିରୋଧରେ ଅସ୍ତ୍ର ଚାଳନା ପାଇଁ ଅମଙ୍ଗ ହୋଇ ଉଠୁଛନ୍ତି, ବିଶ୍ୱହିତ ପାଇଁ ଯୁଦ୍ଧ କରିବାକୁ ଶ୍ରୀକୃଷ୍ଣ ପ୍ରବର୍ତ୍ତାଇଛନ୍ତି । ଗୌତମ ବୁଦ୍ଧଙ୍କୁ ମଧ୍ୟ ଅବତାର ଭାବରେ ଗ୍ରହଣ କରାଯାଇଛି । କାରଣ ମାନବ ମଧ୍ୟରେ ଶାନ୍ତି ଓ ଅହିଂସା ସ୍ୱଭାବର ପ୍ରତିଷ୍ଠା ସମ୍ଭବ ହୋଇଛି । ମତ୍ସ୍ୟ ଅବତାରରୁ ଆରମ୍ଭ କରି ବର୍ତ୍ତମାନ ମାନବ ପର୍ଯ୍ୟନ୍ତ ଯେଉଁ କ୍ରମବିକାଶ ସାଧିତ ହୋଇଛି, ତାହା ଉଭୟ ବିଜ୍ଞାନ ଓ ଆଧ୍ୟାତ୍ମିକ ସ୍ୱୀକୃତିପ୍ରାପ୍ତ ମନେହୁଏ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗଟି ହେଲା 'ମାର୍ଜାରକେଶରୀ'ଙ୍କ ସ୍ୱରୂପ । ତାହାକୁ ସାଧାରଣତଃ ନୃସିଂହ ଅବତାର ଭାବରେ ଗ୍ରହଣ କରାଯାଉଛି । କିନ୍ତୁ ଉଭୟ ବୈଜ୍ଞାନିକ ଏବଂ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଚାର କଲେ ତଥା ବିବର୍ତ୍ତନ ଧାରାକୁ ବିଶ୍ଳେଷଣ କଲେ ତାହା ବରାହ ଓ ନୃସିଂହ ଅବତାର ମଧ୍ୟରେ ଭଗବାନ ବିଷ୍ଣୁଙ୍କ ଅନ୍ୟ ଏକ ସ୍ୱତନ୍ତ୍ର ଅବତାର ନିଶ୍ଚିତ ଭାବରେ । ବରାହ ଅବତାର ପଶୁ ଜଗତର ପ୍ରତିନିଧିତ୍ୱ କରୁଥିବାବେଳେ 'ମାର୍ଜାରକେଶରୀ' ଅବତାରରେ

ଉଭୟ ବିରାଡ଼ି ଓ ସିଂହର ସ୍ୱରୂପ ଧାରଣ କରିବା ଅର୍ଥ ଜୀବଜଗତର ବିକାଶଧାରାରେ ଏକ ସମୟରେ ଏଭଳି ଏକ ଉଗ୍ର ଓ ହିଂସ୍ର ସ୍ୱରୂପ ଧାରଣ କରୁଥିବା ଜୀବଜଗତଟିଏ ରହିଥିବା ଅନୁମେୟ । ତେବେ 'ମାର୍ଜାରକେଶରୀ'ଙ୍କ ସ୍ୱରୂପ ଡାରଉ୍ଇନଙ୍କ ବିବର୍ତ୍ତନବାଦକୁ ଆଧାତ୍ମିକ ଦୃଷ୍ଟିକୋଣୁ ଅଧିକ ଯୁକ୍ତିସମ୍ମତ କରୁଛି ।

## ପୂର୍ଣ୍ଣଚ୍ଛେଦ ପୂର୍ବରୁ

ଶ୍ରୀ ଶ୍ରୀ ନୃସିଂହନାଥ ପୀଠ ନିର୍ବିବାଦୀୟ ଭାବରେ ଓଡ଼ିଶା ଓ ଛତିଶଗଡ଼ର ପବିତ୍ର ଗଙ୍ଗା ତଥା ପାପ ହରଣର ଅନ୍ୟତମ ସର୍ବୋତ୍ତମ ତୀର୍ଥକ୍ଷେତ୍ର । ତାହାର ଧାର୍ମିକ ଓ ଆଧାତ୍ମିକ ମହିମା ଅଦ୍ୱିତୀୟ । ଯମୁନା କନ୍ଧୁଣୀକୁ ଏକ ମହନୀୟ ଆସନରେ ଅଧିଷ୍ଠିତ କରିବା ମାଧ୍ୟମରେ 'ସାମାଜିକ ନ୍ୟାୟ' ଶୀର୍ଷକ ମହାସଂଗୀତର ସେଠି ପ୍ରତ୍ୟହ ଗୁଞ୍ଜରଣ ଶୁଭେ । କନ୍ଧ/ଦଳ ଜନଗୋଷ୍ଠୀକୁ ପୂଜାପଦ୍ଧତିରେ ସାମିଲ କରି ସାମ୍ୟବାଦୀ ବେଦମନ୍ତ୍ର ଉଚ୍ଚାରଣ କରେ ଗନ୍ଧମାର୍ଦ୍ଦନ ଗିରି ଶୃଂଗ । ତଦ୍ୱାରା ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତି ମଧ୍ୟରେ ସମନ୍ୱୟ ସୃଷ୍ଟିର ଆବଶ୍ୟକତା ମଧ୍ୟ ପ୍ରତିପାଦିତ ହୁଏ । ଶ୍ରୀ ଶ୍ରୀ ନୃସିଂହନାଥ ଏମିତି ଏକ ତପୋଭୂମି ଯେଉଁଠି ବୈଷ୍ଣବ, ଶୈବ ଓ ବୌଦ୍ଧ ସଂପ୍ରଦାୟର ମହାମିଳନର ଦିବ୍ୟ ସନ୍ଦେଶ ପ୍ରାପ୍ତ ହୁଏ । ସେଠାକାର ଅଗଣିତ ଔଷଧୀୟ ବୃକ୍ଷଲତା ମାନବ ସେବାର ବାର୍ତ୍ତା ପ୍ରଦାନ କରନ୍ତି । ମନ୍ଦିର ମୁଖଶାଳାରେ ଖୋଦିତ ଶିଳାଲିପି ସେ ଅଞ୍ଚଳର ବୌଦ୍ଧିକ ଭାଷା ଓ ଲିପି ବିକାଶରେ ଭୂମିକା ସଂପର୍କରେ ସୂଚନା କରିଥାଏ । ସର୍ବୋପରି ଭଗବାନ 'ମାର୍ଜାରକେଶରୀ'ଙ୍କ ସ୍ୱରୂପ ବିବର୍ତ୍ତନ ପ୍ରକ୍ରିୟାର ଆଧାତ୍ମିକ ସ୍ୱୀକୃତି ପ୍ରଦାନରେ ଏକ ନୂତନ ଦିଗନ୍ତ । ଓଁ ଶ୍ରୀ ଶ୍ରୀ ନୃସିଂହନାଥାୟ ନମଃ ।

## ସହାୟକ ଗ୍ରନ୍ଥସୂଚୀ


୧. ଶିବ ପ୍ରସାଦ ଦାସ, ସମ୍ବଲପୁର ଇତିହାସ, ଦ୍ୱିତୀୟ ମୁଦ୍ରଣ, ୧୯୬୮ ।

୨. ଅଭ୍ୟୁଦୟ, ରାଜେନ୍ଦ୍ର କଲେଜ ବାର୍ଷିକ ମୁଖପତ୍ର, ରଜତ ଜୟନ୍ତୀ ବିଶେଷାଙ୍କ, ବଲାଙ୍ଗିର ।

୩. Nilamani Senapati (Chief Editor) Orissa District Gazetteers : Sambalpur, Government of Orissa, 1971.

୪. Charles Fabri, History of the Art of Orissa, Bombay, 1974.

୫. ରାମଚନ୍ଦ୍ର ମଲ୍ଲିକ, ସଂକ୍ଷିପ୍ତ କୋଶଳ ଇତିହାସ, ଦ୍ୱିତୀୟ ସଂସ୍କରଣ, ୨୯୭୬ ।

୬. ନିରାକାର ମହାଲିକ, ଶ୍ରୀ ନୃସିଂହନାଥ-ତତ୍ତ୍ୱ, ମନ୍ଦିର ଓ କ୍ଷେତ୍ର ପରିଚୟ, ପଦମପୁର, ୧୯୮୪ ।

୭. T.E. Donaldson, Hindu Temple Art of Orissa, Vol. II, Leiden, 1985-87.

୮. ଡଃ ମଣିନ୍ଦ୍ର କୁମାର ମେହେର (ସଂପାଦକ), ସ୍ୱଭାବ କବି ଗଙ୍ଗାଧର ଗ୍ରନ୍ଥାବଳୀ, ୧୯୯୮ ।

୯. ଓଡ଼ିଶାର ବୌଦ୍ଧ ଧର୍ମ ଓ ସଂସ୍କୃତି (ସଂପାଦନା-କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର), ୨୦୦୦ ।

୧୦. ନାରାୟଣ ପୃଷ୍ଟେଠ୍, ଓଡ଼ିଆ ଭାଷାଲିପିର ପ୍ରାଚୀନ ନିଦର୍ଶନ, ସମାଜ (ରବିବାର), କଟକ, ତା.୬.୦୨.୨୦୦୦, ପୃ.୮ ।

୧୧. ଡଃ ରଶ୍ମିରଞ୍ଜନ ମହାନ୍ତି, ଗନ୍ଧମାର୍ଦ୍ଦନର ପବିତ୍ର ଧାମଦ୍ୱୟ, ସମାଜ, କଟକ, ତା.୩.୧୨.୨୦୦୦, ପୃ.୫-୬ ।

୧୨. Sangita Mishra, The Nrusinghanath Temple-The Date of Inscription- A Study, Orissa Review, LIX (9), Bhubaneswar, April, 2003, pp.42-44.

୧୩. S.S. Panda, Narsinghnath Temple of Bargarh District, Orissa Review, LX(I), Bhubaneswar, August, 2003, pp.61-72.

୧୪. ଡଃ ଭକ୍ତ ପୁରନ ସାହୁ, ସ୍ୱାଧୀନତା ସଂଗ୍ରାମରେ ବୋଡ଼ାସମ୍ବରର ଭୂମିକା, ପଦମ୍ପୁର, ୨୦୦୬ ।

୧୫. ନାରାୟଣ ପୃଷ୍ଟେଠ୍, ଗୋଟିଏ ବହିର ଶତବାର୍ଷିକୀ, ସମ୍ବାଦ, ତା.୧୨.୧୧.୨୦୦୮, ପୃ.୬ ।



ଅଧ୍ୟାପକ ଓ ବିଭାଗୀୟ ମୁଖ୍ୟ
ଶିକ୍ଷା ବିଭାଗ, ପି.ଏସ୍. କଲେଜ
କୋମନା, ନୂଆପଡ଼ା






# ଖେଲଉରର ଖେଲେଶ୍ୱର ମନ୍ଦିର

ଡଃ ସରୋଜ କୁମାର ପଣ୍ଡା

**ପୁ**ରୀ ଜିଲ୍ଲାର ଡେଲାଙ୍ଗ ଥାନା ଅନ୍ତର୍ଗତ ଖେଲଉର ଗ୍ରାମର ଖେଲେଶ୍ୱର ମନ୍ଦିର ଏକାଦଶ ଶତାବ୍ଦୀର ଶେଷଭାଗ ବା ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ଗଙ୍ଗ ରାଜତ୍ୱ ସମୟରେ ନିର୍ମିତ ହୋଇଥିବା ଜଣାଯାଏ । କଳାସ୍ଥାପତ୍ୟର ପରିପାଟୀରେ ପରିପୂର୍ଣ୍ଣ ଏହି ମନ୍ଦିରଟି ଉତ୍କଳୀୟ ଶିଳ୍ପ ଚାତୁରୀର ପରିଚୟ ପ୍ରଦାନ କରେ । ଗଠନ ଶୈଳୀକୁ ଲକ୍ଷ୍ୟ କଲେ ଜଣାଯାଏ ମୁଖ୍ୟ ମନ୍ଦିର ଓ ଜଗମୋହନ ପରସ୍ପରଠାରୁ ଭିନ୍ନ ଓ ଅଲଗା ଅଲଗା ସମୟରେ ନିର୍ମିତ । ବର୍ତ୍ତମାନ ମୂଳ ଜଗମୋହନର କୌଣସି ସ୍ଥିତି ଦେଖାଯାଏ ନାହିଁ । ଏପରିକି ମନ୍ଦିର ଚତୁଃପାର୍ଶ୍ୱରେ ଥିବା ବେଢ଼ା ପ୍ରାଚୀରର କୌଣସି ଭଗ୍ନାବଶେଷ ମଧ୍ୟ ଦୃଶ୍ୟମାନ ହୁଏ ନାହିଁ । କେବଳ ମୁଖ୍ୟ ମନ୍ଦିରଟି ଅବହେଳିତ ଅବସ୍ଥାରେ ଦଣ୍ଡାୟମାନ ଏବଂ ଏଥିମଧ୍ୟରେ ଖେଲେଶ୍ୱର ଶିବଲିଙ୍ଗ ପୂଜା ପାଆନ୍ତି । ମନ୍ଦିର ବାମପାର୍ଶ୍ୱ ନିକଟରେ ଥିବା ଏକ ଶିଳାଲିପିରେ ଏ ଅଞ୍ଚଳ ଚୋଡ଼ଗଙ୍ଗଦେବଙ୍କଦ୍ୱାରା ଅଧିକୃତ ହୋଇଥିବା ଉଲ୍ଲେଖ ରହିଛି ।

ମୁଖ୍ୟ ମନ୍ଦିରର ବାହାର କାନ୍ଥ ପାଞ୍ଚ ଭାଗରେ ବିଭକ୍ତ ଯଥା- ପଭାଗ, ତଳଜଙ୍ଘ, ବନ୍ଧନ, ଉପରଜଙ୍ଘ ଓ ବାରଣ୍ଡା । ଅଙ୍ଗ ଶିଖରଗୁଡ଼ିକ ମନ୍ଦିର ଗଣ୍ଡିର ନିମ୍ନଭାଗ ପର୍ଯ୍ୟନ୍ତ ସଂଯୁକ୍ତ । ଗଣ୍ଡିର ଉପର ଭାଗରେ କୌଣସି ସାଜସଜ୍ଜା ପରିଲକ୍ଷିତ ହୁଏ ନାହିଁ । ଏହାର ଶୀର୍ଷରେ ଉଦ୍ୟତ ସିଂହର ବିଗ୍ରହମାନ ବିଦ୍ୟମାନ । ମନ୍ଦିରର ମସ୍ତକ ଭାଗ- ବେକି, ଖପୁରୀ ଅମଳ କଳସ ଓ କଳସଦ୍ୱାରା ସୁସଜ୍ଜିତ ।

ଖେଲେଶ୍ୱର ମନ୍ଦିର ତିନି ପାର୍ଶ୍ୱରେ ରାହାପାଗ ଭାଗରେ ଗଣେଶ, କାର୍ତ୍ତିକେୟ ଓ ପାର୍ବତୀ ପାର୍ଶ୍ୱ ଦେବଦେବୀରୂପେ ବିରାଜିତ । ଦକ୍ଷିଣପାର୍ଶ୍ୱ ରାହାପାଗରେ ଥିବା ଗଣେଶଙ୍କ ବିଗ୍ରହ ପଦ୍ମପାଖୁଡ଼ା ବେଷ୍ଟିତ ଆସ୍ଥାନରେ ଦଣ୍ଡାୟମାନ । ଆସ୍ଥାନ ନିମ୍ନଭାଗ ଯୋଡ଼ହସ୍ତରେ ଭକ୍ତଙ୍କ ସମାଗମ । ପାର୍ଶ୍ୱରେ ମୂଷିକ ବାହାନ । ଗଣେଶଙ୍କ ବିଗ୍ରହଟି ଜଟା ବିମଣ୍ଡିତ । ତାଙ୍କର ଚାରିହସ୍ତ ମଧ୍ୟରୁ ଗୋଟିଏ କହୁଣୀଠାରୁ ଭଗ୍ନ । କାର୍ତ୍ତିକେୟଙ୍କ ଉଭୟ ପାର୍ଶ୍ୱରେ ଏକ ମୟୂର ଓ ଏକ ଗଞ୍ଜାର ମୂର୍ତ୍ତି ପ୍ରତୀୟମାନ ହୁଏ । ଉତ୍ତରପାର୍ଶ୍ୱରେ ରହିଥିବା ପାର୍ଶ୍ୱଦେବୀ ପାର୍ବତୀଙ୍କ ବିଗ୍ରହ ଦେଖିବାକୁ ଅସ୍ପଷ୍ଟ । ତେବେ ମା'ଙ୍କ ପାଖରେ ଗ୍ରାମବାସୀଙ୍କ ଅଗାଧ ବିଶ୍ୱାସ । ଏହି ଅଞ୍ଚଳରେ ବର୍ଷା ନହେଲେ ଗ୍ରାମବାସୀ ଏକତ୍ର ପାର୍ବତୀଙ୍କ ମାଜଣା କରନ୍ତି ଓ ବିଶ୍ୱାସମତେ ଆକାଂକ୍ଷିତ ଫଳ ପାଇଥାନ୍ତି ବୋଲି ବିଶ୍ୱାସ କରାଯାଏ ।

ଅଷ୍ଟ ଦିଗପାଳ ଓ ସେମାନଙ୍କ ସହଚରୀ ନିଜ ନିଜ ବାହନରେ ମନ୍ଦିର ପାଗ ଭାଗରେ ଶୋଭା ପାଇଥାନ୍ତି । ପାଗଭାଗ ଓ ବାଡ଼ର ନିମ୍ନରେ ନରବିଡ଼ାଳ, ଗଜବିଡ଼ାଳ, ଅନ୍ଧକାସୁର ନିଧନକାରୀ, ଶିବ, ମାତାପୁତ୍ର, ଅସ୍ତ୍ରଶସ୍ତ୍ର ସୁସଜ୍ଜିତ ଦମ୍ପତି, ନାଗନାଗୁଣୀ, ନୃତ୍ୟରତା ଭୈରବ, ନୃତ୍ୟରତା ନାରୀଙ୍କ ପ୍ରତିମୂର୍ତ୍ତି ରହିଛି । ଏହାବ୍ୟତୀତ ମନ୍ଦିର ବାହାର କାନ୍ଥର ଜାଲିକାମ, ଲତା, ପଦ୍ମଫୁଲ, କୀର୍ତ୍ତିମୁଖ, ଚୈତ ଝରକା ଆଦି ଆକର୍ଷଣୀୟ । ଦକ୍ଷିଣ ପଟ କାନ୍ଥରେ ନୃତ୍ୟରତ ଭୈରବ ମୂର୍ତ୍ତି ଅଧିକ ହୃଦୟସ୍ପର୍ଶୀ । ଏହି ମୂର୍ତ୍ତି ଏକ ମାନବମୂର୍ତ୍ତି ଉପରେ ଦଣ୍ଡାୟମାନ । ଏହାଙ୍କ କଙ୍କାଳ ଶରୀରରେ ଲମ୍ବିଛି ମନୁଷ୍ୟ ଖପୁରୀର ଏକ ମାଳ । ମନ୍ଦିର ସମ୍ମୁଖ ଭାଗରେ ରହିଛି ଏକ ପାଷାଣ ବୃଷଭ । ପ୍ରବେଶ ଦ୍ୱାର ଉପରିଭାଗରେ ପଦ୍ମାସନରେ ଗଜଲକ୍ଷ୍ମୀ ବିରାଜିତା ।

ମନ୍ଦିରରେ ଦୈନିକ ଥରେ ମାତ୍ର ଖେଚୁଡ଼ି ଭୋଗ କରାଯାଏ । ମେଳା ମହୋତ୍ସବରେ ବିଶେଷ କରି ଶିବରାତ୍ରୀ ଓ ସଂକ୍ରାନ୍ତିରେ ସେଠାରେ ଜନସମାଗମ ହୋଇଥାଏ । ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଅଧୀନରେ ରହିଥିବା ସେହି ମନ୍ଦିରଟିର ରକ୍ଷଣାବେକ୍ଷଣରେ ଚରମ ଅବହେଳା ପରିଲକ୍ଷିତ ହୁଏ । କାହାରି ଦୃଷ୍ଟି ନାହିଁ ମନ୍ଦିରପ୍ରତି । ମନ୍ଦିର ଉପରେ ଅନେକ ବୃକ୍ଷ ଓ ଗୁଳ୍ମରାଜି ଉଠି ଏହାକୁ ବିପଦସଙ୍କୁଳ ଅବସ୍ଥାକୁ ଟାଣି ଆଣିଛି । ଯତ୍ନ ନ କଲେ, ସେହି ପ୍ରାଚୀନ କୀର୍ତ୍ତିଟି ଅଚିରେ ଧ୍ୱଂସ ପାଇବ ବୋଲି ଅନୁମାନ କରାଯାଉଛି ।

ଅଧ୍ୟକ୍ଷ, ଗାଦିବ୍ରହ୍ମ କଲେଜ
ଡେଲାଙ୍ଗ, ପୁରୀ

# ବାବା ସାହେବ ଆମ୍ବେଦକର

ଜେନାମଣି ଲକ୍ଷ୍ମୀକାନ୍ତ

**ଭା**ରତୀୟ ସମ୍ବିଧାନର ରଚୟିତା ଡକ୍ଟର ବାବାସାହେବ ଆମ୍ବେଦକର କେବଳ ଦଳିତ ଓ ଦୁର୍ବଳଙ୍କର ତ୍ରାଣକାରୀ ନେତା ନୁହେଁ, ପରନ୍ତୁ ସିଏ ଥିଲେ ଜଣେ ପ୍ରଥିତଯଶା ରାଷ୍ଟ୍ରପୁରୁଷ । ଏକାଧାରରେ ସିଏ ଥିଲେ ବିଦ୍ୱାନ, ଲେଖକ, ବିଧିବକ୍ତା, ରାଜନୀତିଜ୍ଞ, ସମାଜ ସୁଧାରକ ଏବଂ ସଂସ୍କୃତି ସମ୍ପନ୍ନ ସାରସ୍ୱତଃ ପୁରୁଷ । ଆଜିଠାରୁ ଠିକ୍ ୧୧୭ ବର୍ଷ ତଳେ ଡକ୍ଟର ଭୀମରାଓ ଆମ୍ବେଦକର ମଧ୍ୟପ୍ରଦେଶର ମହୁନଗରରେ ଏପ୍ରିଲ ୧୪, ୧୮୯୧ ମସିହାରେ ପିତା ରାମଜୀ ମୂକପାଲ ଏବଂ ମାତା ଭୀମାବାଈଙ୍କ ଔରସରୁ ଏକ ଗରିବ 'ମହାର' ପରିବାରରେ ଜନ୍ମ ଗ୍ରହଣ କରିଥିଲେ ଏବଂ ୧୯୫୬ ଡିସେମ୍ବର ୬ ତାରିଖରେ ତାଙ୍କର ଦେହାନ୍ତ ହୋଇଥିଲା । ସେହି ପ୍ରଥିତଯଶା ମନିଷୀ ଓ ରାଷ୍ଟ୍ରପୁରୁଷଙ୍କ ଜୀବନ କାଳ ୬୫ ବର୍ଷରେ ସୀମିତ ଥିଲା ।



ପ୍ରକୃତପକ୍ଷେ ସିଏ ପତିତ ଓ ଦଳିତଙ୍କର ପ୍ରବକ୍ତା ଏବଂ ତ୍ରାଣକର୍ତ୍ତା କେବଳ ନଥିଲେ, ସିଏ ଥିଲେ ଜଣେ ସମାଜର ସଂସ୍କାରକ, ପ୍ରଜ୍ଞା ଓ ପ୍ରେରଣାର ଦିବ୍ୟ ପୁରୁଷ । ତାଙ୍କ ଚିନ୍ତା ଓ ଚେତନା, ସାମାଜିକ ନ୍ୟାୟ, ସମତା, ମାନବୀୟ ଆବେଦନ ସମାଜବାଦ ସହ ଧର୍ମ ନିରପେକ୍ଷତା, ଭାଇଚାରା, ଜାତୀୟ ସଂହତି ଏବଂ ସଂପ୍ରୀତି ଉପରେ ପର୍ଯ୍ୟବସିତ ଓ ଅନୁବନ୍ଧିତ ଥିଲା । ଅନ୍ୟ ଭାଷାରେ କହିଲେ ତାଙ୍କ ମହାପ୍ରୟାଣରେ ଭାରତର ରାଜନୈତିକ ଓ ସାମାଜିକ ଜୀବନାକାଶରୁ ଆପଣାର ଦୀପ୍ତି ଓ ଦ୍ୟୁତିରେ ଚିର ଜାଜ୍ୱଲ୍ୟମାନ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କର ଅସ୍ତ ହେଲା ଏବଂ ତାଙ୍କ ଦେହାନ୍ତରେ ଗୋଟାଏ ଯୁଗର ଅବସାନ ଘଟିଲା । ସିଏ ଜାତିପ୍ରଥାର ଉନ୍ମେଷ ଓ ବିଭ୍ରାନ୍ତି ଦୂରୀକରଣ ସମେତ ଜାତି, ବର୍ଣ୍ଣ ଆଧାରିତ ଅସ୍ପୃଶ୍ୟତା ଭଳି ସାମାଜିକ ବ୍ୟାଧି ଓ କଳଙ୍କ ଏବଂ କାଳିମାର ବିଲୋପନ ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ପରିଶେଷରେ ସାମ୍ବିଧାନିକ ବ୍ୟବସ୍ଥା ବଳରେ ଅସ୍ପୃଶ୍ୟତାର ବିଲୋପନ ଏବଂ ନିରାକରଣରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ, ଇତିହାସ ତାଙ୍କୁ ସେଥିପାଇଁ ଚିରକାଳ ମନେ ରଖିଥିବ । ମନୁସ୍ମୃତି ସଂଭୂତ ଜାତିଆଣ ପ୍ରଥା ଓ ଭେଦଭାବର ବିଷମ-ପରିଣାମ ଓ କୁପ୍ରଭାବକୁ ସାମାଜିକ ଜୀବନରୁ ସାମ୍ବିଧାନିକ-ବ୍ରହ୍ମାସ୍ତ୍ର ପ୍ରୟୋଗ କରି ନଷ୍ଟ ଓ ଧୂଳିସାତ୍ କରିବାରେ ସିଏ ଥିଲେ ସମର୍ଥ ପାର୍ଥ-ସାରଥୀ ।

ସେ ଥିଲେ ଅର୍ଥଶାସ୍ତ୍ରରେ ପ୍ରବୀଣ । ୧୯୨୭ରେ ତାଙ୍କ ସଂପାଦିତ 'ବହିଷ୍କୃତ ଭାରତ' ନାମକ ମରାଠୀ ପତ୍ରିକା ପ୍ରକାଶନ ଏବଂ ପରବର୍ଷ ବମ୍ବେ ବିଧାନସଭାକୁ ମନୋନୀତ ହେବା ଉତ୍ତାରୁ, ନିଷ୍ପେସିତ ଦଳିତ ସମାଜର ନିରାକରଣ ନିମିତ୍ତ ସ୍ୱର ଉତ୍ତୋଳନରେ ବ୍ରତୀ ଥିଲେ ସେ । ଜନଶିକ୍ଷା ସମିତି ଗଠନ ଓ ସେହି ସଂସ୍ଥା ମାଧ୍ୟମରେ କୋଡ଼ିଏରୁ ଊର୍ଦ୍ଧ୍ୱ ସୁପରିଚିତ ଶିକ୍ଷାନୁଷ୍ଠାନର ପ୍ରତିଷ୍ଠା ଓ ରୂପାୟନରେ ତାଙ୍କର ମହାନ୍ ଅବଦାନ ଅଙ୍ଗୀକୃତ । ସିଏ ଥିଲେ ଖଟିଖିଆ ମେହନତୀ ମଣିଷର ଅଧିବକ୍ତା ସେଥିପାଇଁ ୧୯୪୨ରେ ଗଭର୍ଣ୍ଣର ଜେନେରାଲଙ୍କ କାର୍ଯ୍ୟକାରିଣୀ ପରିଷଦକୁ ସ୍ୱାଧୀନ ଶ୍ରମିକ ଦଳର ତୁଙ୍ଗନେତା ରୂପେ ତାଙ୍କୁ ଶ୍ରମିକ ପ୍ରତିନିଧି ରୂପେ ମନୋନୀତ କରାଗଲା ଓ ସେହି ଗୌରବାବହ ପଦବୀରେ ସିଏ ୧୯୪୬ ଯାଏଁ ସେବାରତ ଥିଲେ । ଶ୍ରମିକଙ୍କର ସ୍ୱାଧୀକାର, ସୁରକ୍ଷା ତଥା ଶ୍ରମ ଆଇନରେ ସମୟୋଚିତ-ସଂଶୋଧନ ନିମିତ୍ତ ତାଙ୍କର ଅବଦାନ ଉଲ୍ଲେଖନୀୟ ଥିଲା । ଜଣେ ଜନବାଦୀ ନେତା, ସଂସ୍କାରକ ଏବଂ ନ୍ୟାୟବିତ୍, ପ୍ରଜ୍ଞାପୁରୁଷ ରୂପେ ତାଙ୍କର ବ୍ୟକ୍ତିତ୍ୱ ଏବଂ କର୍ତ୍ତୃତ୍ୱ ପାଇଁ ତାଙ୍କୁ ୧୯୪୭ ସମ୍ବିଧାନ (ପ୍ରଣୟନ) ସଭାର

ଅଧ୍ୟକ୍ଷ ରୂପେ ନିର୍ବାଚିତ କରାଯାଇଥିଲା । ଭାରତୀୟ ସମ୍ବିଧାନ ପ୍ରଣୟନରେ ତାଙ୍କର ଉଲ୍ଲେଖନୀୟ ଯୋଗଦାନ ଏବଂ ସମ୍ବିଧାନ ରଚନାର ପ୍ରମୁଖ ସ୍ଥପତି ଏବଂ କୃତବିଦ୍ୟ ରୂପକାର ରୂପେ ସେ ସୁପରିଚିତ ଏବଂ ସମ୍ମାନାସ୍ପଦ ବ୍ୟକ୍ତି ଥିଲେ ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେଲା ଓ ପଣ୍ଡିତ ନେହେରୁ ମନ୍ତ୍ରିମଣ୍ଡଳରେ ସିଏ ଥିଲେ ପ୍ରଥମ ବିଧିମନ୍ତ୍ରୀ । ତାଙ୍କ ମନ୍ତ୍ରୀତ୍ୱ କାର୍ଯ୍ୟକାଳ ମଧ୍ୟରେ ଭାରତରେ ପ୍ରଚଳିତ ବହୁ ପୁରୁଣା ଅକାମୀ ବିଧିବିଧାନରେ ସମୟୋଚିତ ସଂଶୋଧନରେ ସିଏ ସତତ ଉଦ୍ୟମଶୀଳ ଏବଂ ସଚେଷ୍ଟ ଥିଲେ । ନିଜ ଯୁକ୍ତିରେ ଅଟଳ ରହିବା ଏବଂ ଅନମନୀୟତା ହେତୁ ୧୯୫୧ରେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଦଳିତ ଓ ପତିତ ସମାଜର ଉଦ୍ଧାର ଓ ଅନ୍ତ୍ୟୋଦୟ ସଂଗ୍ରାମରେ ନିଜକୁ ପୂର୍ଣ୍ଣ ପ୍ରାଣରେ ଝାସ ଦେଲେ । ୧୯୫୨ ଜୁନ ୫ ତାରିଖରେ କଲିକତା ବିଶ୍ୱବିଦ୍ୟାଳୟର ଏକ ସ୍ୱତନ୍ତ୍ର ଦୀକ୍ଷାନ୍ତ ସମାରୋହରେ ଏଲ୍.ଏଲ୍.ଡି. ଉପାଧିରେ ଅଭିଷିକ୍ତ କରାଯାଇଥିଲା । ୧୯୫୫ରେ ତାଙ୍କର ବହୁ ଚର୍ଚ୍ଚିତ ଗ୍ରନ୍ଥ 'ଅସ୍ପୃଶ୍ୟତାର ଇତିହାସ ଓ ଆମେ' ପ୍ରକାଶ ପାଇ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା । ଲୋକେ ତାଙ୍କୁ ଦଳିତ ସମାଜର ତ୍ରାଣକାରୀ ଦୂତ ରୂପେ ସମ୍ବୋଧନ କରିବାକୁ ଲାଗିଥିଲେ । ତାଙ୍କ ସଂପର୍କରେ ମହାତ୍ମା ଗାନ୍ଧୀ 'ହରିଜନ' ପତ୍ରିକାରେ ଏକଦା ଲେଖିଥିଲେ - 'ବୈଷ୍ଣବ ଜନତୋ ତେନ କହିଏ ଯୋ ପୀଡ଼ ପରାଇ ଜାଣେରେ ।'

ତାଙ୍କ ମତରେ- ବ୍ରାହ୍ମଣବାଦ ହିଁ ଶାସ୍ତ୍ର ପୁରାଣର ସହାୟତାରେ ଶୁଦ୍ରମାନଙ୍କୁ ଦଳିତ ପତିତ ଆଖ୍ୟା ଦେଇ ଶୋଷଣ ସର୍ବସ୍ୱ କରି ରଖିଲେ ଯୁଗ ଯୁଗ ଧରି । ସବୁ ମଣିଷ ସମାନ ଓ ସମତୁଲ । ସମସ୍ତଙ୍କର ଶୋଣିତ ରକ୍ତବର୍ଣ୍ଣର । ଅଥଚ ଗୋଟିଏ ବର୍ଗ ଉଚ୍ଚ ଏବଂ ଅନ୍ୟ ବର୍ଗ ନୀଚ ବୋଲି ଦର୍ଶାଇବା କିଭଳି ଯୁକ୍ତି ସଙ୍ଗତ, ତାହା ତର୍କରେ ନୁହେଁ ମାନବୀୟ ଦୃଷ୍ଟିକୋଣରୁ ଉପଲବ୍ଧିର ଏକ ଚାକ୍ଷୁସ ପ୍ରସଙ୍ଗ ବୋଲି ସିଏ ଦର୍ଶାଉଥିଲେ ।'

କେବଳ ଜଣେ ବିଦବତ୍ତା ନୁହେଁ, ପରନ୍ତୁ କୁସଂସ୍କାରର ମୂଳକାରଣ ଓ ତା'ର ନିରାକଣର ସିଏ ଥିଲେ ଏକ ଲଢୁଆ ଦସ୍ତାବିଜ୍ । ଦାରିଦ୍ର୍ୟ ଦୂରୀକରଣ ପରିପ୍ରେକ୍ଷୀରେ ତାଙ୍କର ମତ ଥିଲା, ଯେଉଁମାନେ ଆପଣାର ସାମାଜିକ ଓ ଆର୍ଥିକ ଦୁସ୍ଥିତି ଯୋଗୁଁ ଦାରିଦ୍ର୍ୟ ସୀମାରେଖା ତଳେ ନିର୍ଯ୍ୟାତିତ ଓ ନିଷ୍ପେସିତ ସେମାନଙ୍କର ନିରାକରଣ ଏବଂ ସମାଧାନ ମାଧ୍ୟମରେ ହିଁ ଦାରିଦ୍ର୍ୟ ବିମୋଚନ ସମ୍ଭବ । ହେଲେ ଧର୍ମର ଦୁହାଇ ଦେଇ ଭାଗ୍ୟବାଦ ଆଳରେ ସାମୟିକ ଦରିଦ୍ର ନାରାୟଣ ସେବା ବା ଭୋଜନରେ ଗରିବି ହଟେନା । ସେ ଥିଲେ ସଂସ୍କାର ସଂପନ୍ନ ମାନବବାଦୀ ଏବଂ ଧର୍ମ ନିରପେକ୍ଷତାର ଉଦ୍‌ଗାତା । ନିଜକୁ ପ୍ରଥମେ ଭାରତୀୟ ବୋଲି ବିଚାରୁ ଥିଲେ ଏବଂ ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ତାହା ହିଁ ତାଙ୍କର ପ୍ରମୁଖ ଓ ପ୍ରଧାନ ପରିଚୟ ଥିଲା । ଲୋକତନ୍ତ୍ରରେ ତାଙ୍କର ଗଭୀର ଆତ୍ମପତ୍ୟୟ ଅନୁବନ୍ଧିତ ଥିଲା । ସେହି ସଂପ୍ରୀତିର ଆଧାର ଥିଲା ପ୍ରାଚୀନ ଭାରତରେ ଶତାବ୍ଦୀ ଶତାବ୍ଦୀ ଧରି ପ୍ରଚଳିତ ଲୋକତାନ୍ତ୍ରିକ ଐତିହ୍ୟ ଓ ପରମ୍ପରା ସମେତ ବିଶ୍ୱରେ ବିଭିନ୍ନ ବିକାଶଶୀଳ ଓ ବିକଶିତ ରାଷ୍ଟ୍ରରେ ଗଣତାନ୍ତ୍ରିକ ଧାରା ଓ ଧରା ଘେନି ତାଙ୍କର ଗଭୀର ଅଧ୍ୟୟନ ଏବଂ ବିଦବତ୍ତା ମଧ୍ୟ ଥିଲା ।

ଦଳିତ ଉଦ୍ଧାର ସହ ଅନ୍ୟସବୁ ବର୍ଗଙ୍କ ପ୍ରତି ସମାନ ଓ ସମତୁଲ, ସାମାଜିକ, ଆର୍ଥିକ ଏବଂ ସାମ୍ବିଧାନିକ-ନ୍ୟାୟ ପ୍ରଦାନର ସିଏ ଥିଲେ ବଳିଷ୍ଠ ଉଦ୍‌ଗାତା ଏବଂ ତାଙ୍କର ଦୂରଦର୍ଶୀ ଚିନ୍ତା ଓ ଚେତନା ନେଇ ସିଏ ବହୁପୂର୍ବରୁ ଚେତାଇ ଦେଇଥିଲେ ସାମାଜିକ ନ୍ୟାୟ ପ୍ରଦାନ ପ୍ରକ୍ରିୟାକୁ ପ୍ରଶସ୍ତ କରିବା ପରିପ୍ରେକ୍ଷୀରେ ସମାଜର ଅନ୍ୟବର୍ଗଙ୍କ ପ୍ରତି ଯେଭଳି ଅନ୍ୟାୟ ଓ ଅବିଚାର ନହୁଏ ସେଥିପ୍ରତି ସମୁଚିତ ଧ୍ୟାନ ଓ ଦୃଷ୍ଟି ଦେବା ଏକାନ୍ତ ଅପରିହାର୍ଯ୍ୟ । ଅନୁସୂଚିତ ଜନଜାତି ଓ ଜାତିଙ୍କ ସହ ଅନ୍ୟ ସକଳ ବର୍ଗଙ୍କୁ ନ୍ୟାଯ୍ୟ ନ୍ୟାୟ ପ୍ରଦାନ ସମେତ, ସମାଜରେ ସଂପ୍ରୀତି, ସଂହତି, ମୈତ୍ରୀ ଓ ଭ୍ରାତୃତ୍ୱକୁ ଦୃଢ଼ୀଭୂତ କରି ଆମର ରାଷ୍ଟ୍ରୀୟ ଏକତା ଓ ସଂହତି ଏବଂ ଧର୍ମନିରପେକ୍ଷ ଭାଇଚାରାକୁ ଆହୁରି ଜୀବନ୍ତ ଓ ଋଦ୍ଧିମନ୍ତ କରିପାରିବ ବୋଲି ସେ ଭାବୁଥିଲେ ।

ସେ କହୁଥିଲେ ରାଷ୍ଟ୍ରବାଦର ସମୁଚିତ ଉନ୍ମେଷ, ଉତ୍ତରଣ ଓ କାୟା ବିସ୍ତାର ସେତେବେଳେ ସମ୍ଭବ ହେବ, ଯେତେବେଳେ ଜାତି, ବର୍ଣ୍ଣ, ଧର୍ମ ଭେଦାଭେଦ ଭୁଲି ସାମାଜିକ ଭ୍ରାତୃତ୍ୱ ଏବଂ ସଂପ୍ରୀତି ଜନଜୀବନର ସର୍ବୋଚ୍ଚ ଗୁରୁମନ୍ତ୍ର ଓ ଚର୍ଯ୍ୟାପଦରେ ଅନୁବନ୍ଧିତ ହୋଇଯିବ । ବାବାସାହେବ ତ୍ୟାଗ ତିତିକ୍ଷା ଓ ସେବାର ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ସେ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ପଞ୍ଚଶୀଳର ଶିଳାଚାର ସଂହିତାକୁ ସିଏ ଆପଣେଇ ନେଇଥିଲେ ଜୀବନର ମୁକ୍ତି ବେଦ ରୂପେ । ସିଏ ବୁଦ୍ଧ ଦର୍ଶାନୁରାଗୀ ଥିଲେ ଅଥଚ ହିନ୍ଦୁଧର୍ମ କିମ୍ବା ଅନ୍ୟ କୌଣସି ଧର୍ମ ପ୍ରତି ତାଙ୍କର ଅସୂୟା ବା ବିଦ୍ୱେଷ ଭାବ ନଥିଲା । ବସ୍ତୁତଃ ସେଥିଲେ ସର୍ବଧର୍ମ ସମନ୍ୱୟରେ ପ୍ରତ୍ୟର୍ପିତ । ତାଙ୍କ ମତରେ (୧) ନୈତିକତା ଦୃଷ୍ଟିକୋଣରୁ ପ୍ରତ୍ୟେକ ଧର୍ମର ମାନ୍ୟ ସିଦ୍ଧାନ୍ତ ରହିଛି । (୨) ଧାର୍ମିକ ଚେତନା ବୌଧିକତା ବା ବିଜ୍ଞାନ ସମ୍ମତ ହେବା ଚାହି ।

(୩) ଧର୍ମ ନୈତିକତା, ସ୍ୱତନ୍ତ୍ରତା, ସମତା ଏବଂ ଭ୍ରାତୃତ୍ୱ ଭାବ ପରେ ପ୍ରତିଷ୍ଠିତ ହେବା ଚାହି । ସାମାଜିକ ସ୍ତରରେ ଅନ୍ୟଥା ଧର୍ମବାଦ ବିସମ୍ବାଦର କାରଣ ଓ ଅନ୍ତରାୟ ହୋଇ ମୁଣ୍ଡଟେକି ଉଠିପାରେ । (୪) ଧର୍ମ ମାନବିକତାର ଆଧାରଶିଳା ଏଣୁ ଧର୍ମ ଉଚ୍ଚନୀଚ ଭେଦଭାବ ଧନୀ-ଦରିଦ୍ର ଭାବକୁ ଅନୁରଣିତ ଅଥବା କୌଣସିମତେ ପ୍ରୋତ୍ସାହିତ କରିବା ଅନୁଚିତ, ଯେହେତୁ ସବୁ ଧର୍ମର ଅଘୋଷିତ ମୂଳମନ୍ତ୍ର ହେଉଛି - ବହୁ ଜନହିତାୟ ବହୁ ଜନ ସୁଖାୟ । ସେ ୧୯୧୫ରେ ଏମ୍.ଏ. ତଥା ୧୯୧୬ରେ ପି.ଏଚ୍.ଡି. ପ୍ରାପ୍ତି ପରେ ୧୯୨୩ରେ ବିଲାତରୁ ଡି.ଏସ୍.ସି. ଏବଂ ବାର-ଏଟ୍-ଲ' ଉପାଧି ଭଳି ଉଚ୍ଚଶିକ୍ଷା ଲାଭସତ୍ତ୍ୱେ, ସରଳ ନିରାଡ଼ମ୍ବର ଓ ନିଷ୍କପଟ ଜୀବନଚର୍ଯ୍ୟାରେ ଅନୁବନ୍ଧିତ ବାବାସାହେବ ଉଚ୍ଚଶିକ୍ଷା, ଉଚ୍ଚ ପଦପଦବୀ, ଅର୍ଥଲାଳସା, ବିଳାସବ୍ୟସନ ଓ ଭୋଗଭାଗ୍ୟର ମୋହ ପରିହାର କରି ଜଣେ ଶେଷ ଜୀବନରେ ବୌଦ୍ଧ ଧର୍ମ ଅବଲମ୍ବନ କରି ଦଳିତ ଓ ପତିତ ଜନତାର ସେବାକୁ ଆପଣେଇ ନେଲେ ଜୀବନର ବ୍ରତ ରୂପେ । ଯୁବାବସ୍ଥାରେ ଉଚ୍ଚପଦର ଆକର୍ଷଣ, ଉଚ୍ଚ ନ୍ୟାୟାଳୟର ନ୍ୟାୟମୂର୍ତ୍ତି ଗାଦି ଅଥବା ରାଜନୀତିକ ଆକର୍ଷଣ ତାଙ୍କୁ ତିଳେ ହେଲେ ପ୍ରଲୁବ୍ଧ କରିପାରିନଥିଲା । ପଣ୍ଡିତ ଜବାହରଲାଲ ନେହେରୁଙ୍କ ଭାଷାରେ- 'ସିଏ କୁସଂସ୍କାର ଏବଂ ସାମାଜିକ ଶୋଷଣ ବିରୁଦ୍ଧରେ ଥିଲେ ଏକ ସର୍ବକାଳୀନ ଲଢୁଆ ହସ୍ତାକ୍ଷର ଏବଂ ସାମାଜିକ ନ୍ୟାୟ, ଆର୍ଥିକ ସମତା, ମୈତ୍ରୀ ଭ୍ରାତୃତ୍ୱ ଓ ସଂପ୍ରୀତି ରୂପୀ ପଞ୍ଚଶୀଳର ଉଦ୍‌ଗାତା ଆଉ ପଞ୍ଚଜନ୍ୟର ମଙ୍ଗଳନାଦ ଥିଲେ । ଅସମତା, ସାଂପ୍ରଦାୟିକ ସଂଘର୍ଷ ଏବଂ ଧର୍ମ ଦ୍ୱନ୍ଦ୍ୱ, ଦୁର୍ବଳ ଉପରେ ସବଳର ଶୋଷଣ ଓ ନିପୀଡ଼ନ ଥିବା ଯାଏଁ, ବାବାସାହେବ ଅବିସ୍ମରଣୀୟ ହୋଇ ଖୋଜା ପଡୁଥିବେ ।'

ସର୍ବୋପରି ଜଣେ କ୍ରାନ୍ତଦର୍ଶୀ ନ୍ୟାୟବିତ୍ ଏବଂ ରାଷ୍ଟ୍ରନୀତିଜ୍ଞ ରୂପେ ଭାରତର ସମ୍ବିଧାନ ପ୍ରଣୟନରେ ତାଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ସେ ବେଶ୍ ଚିରକାଳ ସ୍ମରଣୀୟ ହୋଇ ରହିଥିବ । ୧୯୪୯ ନଭେମ୍ବର ୪ ତାରିଖରେ ବାବାସାହେବଙ୍କ ସମ୍ବିଧାନ ପ୍ରଣୟନରେ ଯୁଗାନ୍ତକାରୀ ଅବଦାନାର୍ଥେ ଆୟୋଜିତ ସମ୍ବିଧାନ (ଅଙ୍ଗୀକାର) ସଭାର ଅନ୍ୟତମ ପ୍ରଣେତା ଟି.ଟି. କୃଷ୍ଣମାଚାରୀଙ୍କ ସ୍ୱୀକାରୋକ୍ତି ଥିଲା - 'ସମ୍ବିଧାନ ପ୍ରଣୟନାର୍ଥେ ମନୋନୀତ ସାତ ଜଣିଆ ସଦସ୍ୟ ବିଶିଷ୍ଟ କମିଟିର ଜଣେ ସଦସ୍ୟ ତ୍ୟାଗପତ୍ର ଦେଲେ । ଜଣେ ସଦସ୍ୟଙ୍କର ଦେହାନ୍ତ ଘଟିଲା । ଜଣେ ଆଫ୍ରିକା ଚାଲିଗଲେ । ଜଣେ ସଦସ୍ୟ ନିଜ ଦପ୍ତର କାମରେ ବ୍ୟସ୍ତ ରହିଲେ ଏବଂ ଜଣେ ଦୁଇଜଣ ଅନ୍ୟ ସଦସ୍ୟ ଦିଲ୍ଲୀ ବାହାରେ ଦୂରରେ ରହୁଥିଲେ । ସ୍ୱାସ୍ଥ୍ୟଗତ କାରଣ ହେତୁ ସେ ନିୟମିତ ଉପସ୍ଥିତ ରହିପାରୁନଥିଲେ । ଏଥିଯୋଗୁଁ ସମ୍ବିଧାନ ରଚନା / ପ୍ରଣୟନର ସକଳ ଗୁରୁଭାର ମୁଖ୍ୟତଃ ଆମ୍ବେଦକରଙ୍କୁ ଉଠାଇବାକୁ ପଡୁଥିଲା ଏବଂ ଏଥିପାଇଁ କେବେ କୁଣ୍ଠା ବା ବିରକ୍ତି ପ୍ରକାଶ କରିବା ପରିବର୍ତ୍ତେ ସିଏ ହସ ହସ ମୁହଁରେ ଦିନରାତି ଅକ୍ଳାନ୍ତ ପରିଶ୍ରମରେ ବ୍ରତୀ ଥିଲେ । ୧୪ ତାରିଖ ନଭେମ୍ବର ୧୯୪୯ରେ ଚିଠା ସମ୍ବିଧାନର ତୃତୀୟ ଅଧ୍ୟୟନ ଉତ୍ତାରୁ, ନଭେମ୍ବର ୨୫ ତାରିଖ ୧୯୪୯ରେ ତାଙ୍କ ପ୍ରଶଂସାରେ ସମ୍ବିଧାନ ସଭାଗୃହ କରତାଳି ଓ ଉଚ୍ଛ୍ୱସିତ ବଧାଇରେ ମୁଖର ହୋଇ ଉଠିଥିଲା । ନିଜର ଚୂଡ଼ାନ୍ତ ଅଭିଭାଷଣରେ ବାବାସାହେବ କହିଥିଲେ - ୧୯୫୦ ଜାନୁଆରୀ ୨୬ ଦେଶର ରାଜନୈତିକ ଜୀବନଧାରା ସମତାରେ ପ୍ରତ୍ୟାର୍ପିତ ହେବ, ପରନ୍ତୁ ସାମାଜିକ ଏବଂ ଆର୍ଥିକ ଜୀବନରେ ବୈଷମ୍ୟ ବହୁକାଳ ଧରି ଅପ୍ରତିହତ ରହିବା ଅବଶ୍ୟମ୍ଭାବୀ ।' ଦୀର୍ଘ ୪୦ ମିନିଟ୍ ଧରି ସମ୍ବିଧାନ ନିର୍ମାଣର ପ୍ରମୁଖ ଓ କୃତବିଦ୍ୟ ସ୍ଥପତି ବାବା ସାହେବଙ୍କର ସେହି ଐତିହାସିକ ଭାଷଣ ପ୍ରଦାନବେଳେ ସମ୍ବିଧାନ ସଭାଗୃହ ଘନଘନ କରତାଳି ଓ ଉଚ୍ଛ୍ୱସିତ ହର୍ଷଧ୍ୱନିରେ ଗୁଂଜରିତ ହୋଇ ଉଠିଥିଲା । ଉପସ୍ଥିତ ସୁଧୀଜନ ବାବା ସାହେବଙ୍କ ପ୍ରଶଂସା ଓ ପ୍ରଶସ୍ତିଗାନରେ ସେଦିନ ଶତମୁଖର ହୋଇ ଉଠିଥିଲେ ।

ସିଏ ସମତା, ସ୍ୱାଧୀନତା ଏବଂ ବନ୍ଧୁତ୍ୱର ଉପାସନାକାରୀ ଭାରତକୁ ଏସିଆରେ ଆଲୋକିତ କରିଥିବା ଉଦାରବାଦୀ ବୌଦ୍ଧଧର୍ମାନୁଗାମୀ ଥିଲେ । ରାଜନୈତିକ ପ୍ରଜାତନ୍ତ୍ରକୁ ସାମାଜିକ ପ୍ରଜାତନ୍ତ୍ରରେ ରୂପାନ୍ତରିତ କରିବାର ସ୍ୱପ୍ନ ଓ ସୂର୍ଯ୍ୟତୃଷ୍ଣାରେ ତାଙ୍କର ଅତୁଳ୍ୟ ବରଦାନ ହେଉଛି ସ୍ୱାଧୀନ ଭାରତର ସ୍ୱକୀୟ ବିଶାଳ ସମ୍ବିଧାନର ଦେବାଳୟ । ସେହି ଦେବାଳୟର ସଂରକ୍ଷଣ ଓ ପୂଜାର୍ଚ୍ଚନାର ପୂର୍ଣ୍ଣ ଉତ୍ତରଦାୟ ଆମ ସମସ୍ତଙ୍କର । ଆଜିଠାରୁ ଠିକ୍ ୫୨ ବର୍ଷ ତଳେ ଡିସେମ୍ବର ୬ ତାରିଖ ୧୯୫୬ରେ ଏହି ପ୍ରଥିତଯଶା ରାଷ୍ଟ୍ରପୁରୁଷ ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ - ତାଙ୍କ ଅବର୍ତ୍ତମାନର ୫୨ ବର୍ଷ ପରେ ଏହି ଅମୃତ ପୁରୁଷ ଏବେବି ବିମୂର୍ତ୍ତ ଏବଂ ଅଧିକ ପ୍ରାସଙ୍ଗିକ ଭାରତର ଜନଜୀବନରେ । ସେହି ପ୍ରେରଣା ପୁରୁଷଙ୍କର ମାର୍ଗଦର୍ଶନ, ତ୍ୟାଗ ସେବା, ସ୍ୱଦେଶପ୍ରୀତି ଆମର ପ୍ରାର୍ଥନା ଓ ପାଥେୟ ହେଉ ।

ମିଶନ ମାର୍ଗଦର୍ଶୀ
୧୯୦, ସୋନାଲିକା ଏନ୍‌କ୍ଲେଭ
ଲୁଇସ୍ ରୋଡ଼, ଭୁବନେଶ୍ୱର-୧୪

# ନନ୍ଦକିଶୋରଙ୍କ ସୃଷ୍ଟି ସମ୍ଭାରରେ ପଲ୍ଲୀ ଚେତନା

ରବୀନ୍ଦ୍ର କୁମାର ବେହୁରିଆ

**ଆ**ଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ନନ୍ଦକିଶୋରଙ୍କ ସାହିତ୍ୟରେ ଆବିର୍ଭାବ ଯେମିତି ଚମକପ୍ରଦ, ତାହା ସେତିକି ସୃଷ୍ଟି-ବୈଚିତ୍ର୍ୟ-ବିମଣ୍ଡିତ । ପୃଷ୍ଠଭୂମିରେ ନୂତନତା, ପଲ୍ଲୀପ୍ରାଣତା, ସର୍ବୋପରି ସ୍ୱକୀୟ ସୌନ୍ଦର୍ଯ୍ୟର ପ୍ରାଣପୂର୍ଣ୍ଣ ମୌଳିକତା- ଏ ତିନୋଟି ବିଷୟ ଚକ୍ଷୁ ସମ୍ମୁଖରେ ରଖି ନନ୍ଦକିଶୋରଙ୍କ ସାହିତ୍ୟ ଅଧ୍ୟୟନ କଲେ ଆମେ ସେ ସାହିତ୍ୟର ପ୍ରକୃତ ରସାତ୍ମକ ଅନ୍ତର୍ବାଣୀ ଅନୁଭବ କରିହୁଏ ।



ଓଡ଼ିଶାର ଗଣଜୀବନ ହେଉଛି ପଲ୍ଲୀ କେନ୍ଦ୍ରାଭିମୁଖୀ । ଏହାର ସମଗ୍ର ଜୀବନ ପ୍ରବାହ ପଲ୍ଲୀଦ୍ୱାରା ନିୟନ୍ତ୍ରିତ ଓ ବିକଶିତ । କିନ୍ତୁ ସମୟକ୍ରମେ ଆଧୁନିକ ଶିକ୍ଷାର ପ୍ରସାର ଓ ନୂତନ ଶାସନ ପ୍ରବର୍ତ୍ତନ ଫଳରେ ଏକ ନୂତନ ଅଭ୍ୟୁତଥିତ ସହର ଜୀବନ ସମ୍ଭବପର ହେବାରୁ ପରମ୍ପରା ପରିଚାଳିତ ପଲ୍ଲୀ ଜୀବନ ଶିକ୍ଷିତଲୋକଙ୍କଦ୍ୱାରା ଅନାଦୃତ ହୋଇଥିଲା । ଫଳରେ ନୂତନ ଓ ପୁରାତନ ଜୀବନବୋଧର ହେଲା ଏକ ତୀବ୍ର ସଂଘର୍ଷ, ଯାହାର ପରିଣତି ସ୍ୱରୂପ ଲୋକେ ପଲ୍ଲୀକୁ ଅନାଦର କରି କ୍ରମେ କ୍ରମେ ସହର ପ୍ରତି ଅଧିକ ଆକୃଷ୍ଟ ହୋଇପଡ଼ିଲେ । ସ୍ଥୂଳତଃ, ପଲ୍ଲୀଶ୍ରୀର କ୍ରମାବସାନ ଓ ସହରୀ ଜୀବନ କ୍ରମାଭ୍ୟୁଦୟ, ଏ ଉଭୟ ଜୀବନର ସନ୍ଧିକ୍ଷଣରେ ଯେଉଁ ପ୍ରତିଭାବାନ କବିମାନେ ଆବିର୍ଭୂତ ହେଲେ, ଅସ୍ତାୟମାନ ପଲ୍ଲୀ ସୌନ୍ଦର୍ଯ୍ୟ ରବିଙ୍କର ସମସ୍ତ ବିଭା ସାହିତ୍ୟରେ ସାଇତି ନେବାପାଇଁ ପରବର୍ତ୍ତୀ ସମୟରେ ସେମାନେ ଚେଷ୍ଟା କରିଥିଲେ । ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ହେଉଛି ଏହି ଜୀବନ-ସଂଘର୍ଷର ଆଦିକାଳ । ତା'ର ଶେଷ ଭାଗରୁ ହିଁ ଲେଖକମାନେ ପଲ୍ଲୀ-ସାହିତ୍ୟର ଉଦ୍ଧାର, ତା'ର ସମାଲୋଚନା ଓ ନବୀକରଣ ବିଷୟରେ ଚେଷ୍ଟିତ ହୋଇଥିଲେ । ଫକୀରମୋହନ, ଗଙ୍ଗାଧର, ରାଧାନାଥ, ମଧୁସୂଦନ ରାଓ ପ୍ରମୁଖଙ୍କ କାବ୍ୟ-କବିତାରେ ମଧ ପଲ୍ଲୀର ମନୋହର ଚିତ୍ର ସ୍ଥାନ ପାଇଲା । କିନ୍ତୁ ଅତ୍ୟଧିକ ମନୋମୁଗ୍ଧକର ପଲ୍ଲୀମାଟିର ଶାନ୍ତ-ସୁନ୍ଦର-ସ୍ନିଗ୍ଧ ତଥା ସୌନ୍ଦର୍ଯ୍ୟ ପରିପୂର୍ଣ୍ଣତା ଲାଭ କରିଛି ନନ୍ଦକିଶୋରଙ୍କ ସୃଷ୍ଟି ସମୂହରେ । 'ପଲ୍ଲୀଚିତ୍ର' ପ୍ରଥମ ଭାଗର 'ପ୍ରସ୍ତାବନା'ରେ କବି ଲେଖିଛନ୍ତି ।

'ଯାଏ ପ୍ରିୟ ପୁରାତନ ଆସଇ ନିତ୍ୟ ନୂତନ<br>
ପୁରାତନ ପଲ୍ଲୀର ସେ ଦୃଶ୍ୟ ମନୋହର<br>
ଚିତ୍ରି ପାରିବକି ଭାଇ ନବ ଚିତ୍ରକର ।'

ଏ 'ନବଚିତ୍ରକର' (କବି ନିଜେ) ପୁରାତନ ପଲ୍ଲୀର ସେ ମନୋହର ଦୃଶ୍ୟ ବର୍ଣ୍ଣନା ପ୍ରସଙ୍ଗରେ ୧୯୦୦ ମସିହାରେ ଲେଖିଛନ୍ତି -

'ମେଘ ବରଷଇ ବିଜୁଳି ମାରଇ ପବନ ବହଇ ଖରେ<br>
ତରୁଣ ଯୌବନେ ପରାଣ ପ୍ରତିମା ଛାଡ଼ି ଆସିଅଛି ଘରେ ।<br>
ଭାବର ଆବେଶେ ଦୂରପରବାସେ ମନେପଡ଼େ ପ୍ରିୟ ଯାହା<br>
ତାହାରି ସଂଗତେ ଦରଶନ ଦିଏ ଅତୀତ ଜୀବନ ଛାୟା ।'

ଯାହା ପ୍ରିୟ ବୋଲି ମନେପଡ଼େ ଓ ଯାହା ସହିତ ଅତୀତ ଜୀବନର ଛାୟା ଦର୍ଶନ ଦିଏ, ତାହା ଯେ କବିଙ୍କ ନିଜ ପତ୍ନୀ କୋକିଳା ଦେବୀ - ଏ କଥା ସତ୍ୟ । ହେଲେ ହେଁ, ସେ ପ୍ରିୟା ମଧ ହେଉଛି ବାଲ୍ୟ ଜୀବନର ଅତୀତ ପ୍ରିୟ ଅନୁଭୂତି । ଏହାର ଅଠର ବର୍ଷ ପରେ 'ପଲ୍ଲୀଚିତ୍ର' ଦ୍ୱିତୀୟ ଭାଗ 'ପ୍ରସ୍ତାବନା'ରେ କବି କହିଛନ୍ତି-

'କିନ୍ତୁ ଦୟାକରି କଳ୍ପନା ସୁନ୍ଦରୀ ଦେଇଛନ୍ତି ମୋତେ ବର<br>
ସୁନ୍ଦର ଶୈଶବ ଛବିରାଜି ଦୂରୁ ଦିଶଯ ସୁନ୍ଦରତର<br>
ଅଜ୍ଞାତେ ଭୁଞ୍ଜିଲି ଯେ ସୁଖ ଶୈଶବେ ଏବେ ଏ ଯୌବନେ ତାହା<br>
ଦୂର ଗିରି ପ୍ରାୟ କଳ୍ପନା ନୟନେ କିବା ମନୋରମ ଆହା ।'

ଗାଁର ନିତିଦିନିଆ ଘଟଣା, ଗଛପତ୍ର, ପୋଖରୀ ତୁଠରେ ପାଣି ମାଠିଆ ବୁଡ଼ାଇବାର ଦୃଶ୍ୟ ଏମିତି ଅନେକ ଚିତ୍ର ଭରି ଉଠିଛି କବିଙ୍କ ଲେଖନୀରେ । ଗାଁ ମାଟିର ଗନ୍ଧ, ଆମ୍ବ ବଉଳର ବାସ୍ନା, କିଆବଣର ସୁରଭିରେ ଫାଟି ପଡୁଥିବା ପଲ୍ଲୀମାଟି କବିଙ୍କ 'ପଲ୍ଲୀଚିତ୍ର'ରେ ନିଖୁଣ ଭାବରେ ଫୁଟି ଉଠିଛି । କବିଙ୍କ 'ପଲ୍ଲୀଚିତ୍ର', 'ନିର୍ଝରଣୀ', 'ପ୍ରଭାତ ସଂଗୀତ', 'ବସନ୍ତ କୋକିଳ', 'କାକ ବାରତା' ପ୍ରଭୃତି କବିତାରେ ପଲ୍ଲୀମାଟିର ମନୋହାରିତା, ସୌନ୍ଦର୍ଯ୍ୟବୋଧତା ଚମତ୍କାର ଭାବେ ସ୍ଥାନ ପାଇଛି । ଗାଁଦାଣ୍ଡର ଧୂଳିଖେଳ, ପୋଖରୀହୁଡ଼ା, ଆମ୍ବତୋଟାର ଖେଳସବୁ କିଛି ଗୋଟି ଗୋଟି କରି ସେ ସ୍ମରଣ କରିଛନ୍ତି ।

'ତେଣୁ ବନ୍ଧୁ ବାଲ୍ୟ ପଲ୍ଲୀଚିତ୍ର ପୁଣି
ଆଙ୍କିଲି ତୂଳିକା ଧରି
ବାର୍ଦ୍ଧକ୍ୟରେ ବନ୍ଧୁ ମରଣେ ସ୍ମାରକ
ହେବ ଏ ତୁମ୍ଭ ମୋହରି ।'

'ପଲ୍ଲୀଚିତ୍ର' ପ୍ରଥମ ଭାଗର ପ୍ରଥମ ଦୃଶ୍ୟ 'ସାରମଧେ' ବା 'ପଲ୍ଲୀବାସୀ'ରେ ପଲ୍ଲୀ ସକାଳର ବର୍ଣ୍ଣନା ଦେଖିବାକୁ ମିଳେ । ବିଦେଶୀ ପ୍ରିୟଜନର ସମ୍ବାଦ ପାଇଁ କାକକୁ ତଣ୍ଡୁଳ ଦାନ, ରାଜପଥରେ ବାଟୋଇର ଗମନ, ବାଳକମାନଙ୍କର 'ଶୁଆଶାରୀ' ପ୍ରଭୃତି କ୍ରୀଡ଼ା ସଂପାଦନ, ପୁଷ୍କରିଣୀରେ ପଲ୍ଲୀ ସିମନ୍ତିନୀମାନଙ୍କର ସ୍ନାନ, ନାଥର କେନ୍ଦରା ଓ କେଳା କେଲୁଣୀଙ୍କ ଧୁଡୁକି ବାଦନ, ଗୋପାଳୁଣୀର ଦୁଧ ଦହି ବିକ୍ରୟ, ଲୁଣ ତେଲ ମସଲାରେ ବେପାର, ଗୁଡ଼ିଆଣୀର ମୁଢ଼ି ବିକ୍ରୟ, ଗ୍ରାମ ଭାଗବତ, ଜମିଦାର ଓ ପରିବାର ବର୍ଗଙ୍କ ଜୀବନ ପ୍ରବାହ, ଖଣ୍ଡାୟତ, କରଣ, ବ୍ରାହ୍ମଣ ପ୍ରଭୃତି ଜାତିର ଲୋକଙ୍କ ବର୍ଣ୍ଣନା, ମହାଜନର ବେପାର ଓ ତା'ର କୃପଣତା, ବିଭିନ୍ନ ହାଟୁଆ ଜାତି, ଗ୍ରାମର ଆଖଡ଼ା, ପରସ୍ପର କଳହରତା ଗ୍ରାମ ବାରାଙ୍ଗନା, ବୈଷ୍ଣବ ମଠ-ଏକ କ୍ଷୁଦ୍ର ପରିସର ମଧ୍ୟରେ ଓଡ଼ିଆ ଗ୍ରାମବାସୀଙ୍କ ଜୀବନ ପ୍ରବାହର ସାର୍ଥକ ପରିଚୟ ଏଥିରେ ଦେଖିବାକୁ ମିଳେ । ଗ୍ରାମବାସୀଙ୍କ ବୈଷୟିକ ଉନ୍ନତିର ପ୍ରତୀକ 'ଗ୍ରାମଖଳା', ସେମାନଙ୍କ ବୌଦ୍ଧିକ ଉନ୍ନତିର ପରିଚାୟକ 'ଗ୍ରାମ ଚାଟଶାଳୀ', ପକ୍ଷୀକୂଜନ ପରିପୂର୍ଣ୍ଣ 'ଗ୍ରାମତୋଟା', ଧର୍ମ ଭାବର 'ଗ୍ରାମଦେବତା' ଓ 'ଗ୍ରାମ ମହାଦେବ', ଗ୍ରାମୀଣ ଜୀବନର ଅନ୍ତିମ ଆଶ୍ରୟସ୍ଥଳ 'ଶ୍ମଶାନ' ଓ ବାଣିଜ୍ୟିକ ଜୀବନର କେନ୍ଦ୍ର 'ଗ୍ରାମହାଟ' - ପଲ୍ଲୀ ଜୀବନରେ ଲକ୍ଷଣୀୟ ।

'ପଲ୍ଲୀଚିତ୍ର' ଦ୍ୱିତୀୟ ଭାଗର ବିଷୟ ନିର୍ବାଚନ ଓ ପ୍ରକାଶ ଚାତୁର୍ଯ୍ୟ ମଧ୍ୟ ଅଧିକ ମନୋଜ୍ଞ ଓ ମନୋମୁଗ୍ଧକର । ଦୃଷ୍ଟାନ୍ତ ସ୍ୱରୂପ-

'ବୈଶାଖ ମାସରେ ପଣାସଂକରାନ୍ତି ହୁଅଇ ପଣା ଛତୁଆ
କାଠଗୋଡ଼ ପିନ୍ଧି ମଙ୍ଗଳା ମୁଣ୍ଡାଇ ନାଚନ୍ତି ଘଣ୍ଟ ପାଟୁଆ
ଏହି ମାସେ ହୁଏ ଚନ୍ଦନ ଯାତରା ନାବକେଳି ଏହି ମାସେ
ନାବକେଳି କରି ଯୁବକ ମଉଜ କରୁଥାନ୍ତି କ୍ରୀଡ଼ା ହାସେ ।
ବୃଦ୍ଧା ପିତାମହୀ କୋଳେ ଘେନି ଶିଶୁ ଜହ୍ନମାମୁଁକୁ ଡାକନ୍ତି,
ଶିଶୁକୁ ଶୁଣାଇ ଗୀତ ଶୁଣିବାକୁ ଆନକୁ ମନା କରନ୍ତି ।
କେଣେ ଭାସିଯାଉ ଆରେ ଜହ୍ନମାମୁଁ ? ମୋ' ଧନ ଘରକୁ ଆ ଆ
ପାଟଲୁଗା ପିନ୍ଧି ମୋ' ଧନ ସଂଗତେ ରାକ୍ଷୀ ପୀଠା ଖାଇଯାଆ ।'

ପଣା ସଂକ୍ରାନ୍ତିରେ ପଣା ଛତୁଆ ଓ ଘଣ୍ଟ ପାଟୁଆଙ୍କ ପାଟୁଆଯାତ ଚନ୍ଦନଯାତ୍ରା ଓ ନାବ କେଳିରେ ଯୁବକମାନଙ୍କ ମଉଜ, ଚାନ୍ଦିନୀ ରାତ୍ରୀରେ ସିମନ୍ତିନୀମାନଙ୍କର ଅନ୍ତରଙ୍ଗ ଆଳାପ ତଥା ଶିଶୁ ସଂଗୀତ ଜହ୍ନମାମୁଁର ଉଲ୍ଲେଖ - ଏହି କେତୋଟି ବିଷୟ ଭିତରେ ବୈଶାଖ ମାସର ଜୀବନ-ଭୋଗ-ଚିତ୍ର ଏଠାରେ ଦେଖିବାକୁ ମିଳେ ।

ଶୀତ, ବର୍ଷା, ଖରା, କାକରର ବର୍ଣ୍ଣନାରେ ଷଡ଼ମୁଖ ହୋଇଛନ୍ତି ନନ୍ଦକିଶୋର । 'ନବବର୍ଷ ଭାବନା'ରେ କବି ତେଣୁ ଗାଇଛନ୍ତି-

'ବରଷା କାଳରେ ଜନନୀ କୋଳରେ ଶୋଇଥିଲି ସୁଖେ ଯେବେ
ଗହୀର ନିଶୀଥେ ଗୀତ ଶୁଣିଥିଲି ମନେପଡ଼େ ତାହା ଏବେ ।'

ଅଥବା,

'ମେଘ ବରଷିଲା ଟୁପୁରୁ ଟୁପୁରୁ କେଶୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ ରାଜା ତେଲିଙ୍ଗି ବାଇଦ ବଜା ।'

ପଲ୍ଲୀ ସକାଳର ମନୋରମତା, ପଲ୍ଲୀ- ମଣିଷର ସୁଖ ଦୁଃଖର ଚିତ୍ରକଥା ପାଠକ ପ୍ରାଣରେ ଆନନ୍ଦର ଫଲ୍‌ଗୁ ଖେଳାଇଦିଏ ।

'ପ୍ରଭାତୁ ଉଠିଣ ଯେ ଯାହା ଦୁଃଖରେ ଖରେ କରନ୍ତି ଗମନ
ତାଳ ଆତ ପତ୍ର ମସ୍ତକେ ଧରିଣ ଦୁଃଖୀ ଗ୍ରାମବାସୀ ଗଣ ।'

ସକାଳର ପଲ୍ଲୀ ଅପେକ୍ଷା ସନ୍ଧ୍ୟା ସମୟର ପଲ୍ଲୀ-ଆହୁରି ରମଣୀୟ, ଆକର୍ଷଣୀୟ ଓ ମନଲୋଭା । ପଶ୍ଚିମ ଆକାଶରେ ସୂର୍ଯ୍ୟ ବୁଡ଼ିଲେ ଗାଈଗୋଠ ବାହୁଡ଼ାର ହମ୍ବା ରଡ଼ି ଶୁଭେ । ଗାଁଗଣ୍ଡା ଧୂଳିରେ ଧଳାବର୍ଣ୍ଣ ହୁଏ । ମନ୍ଦିରରେ ଆଳତି ଘଣ୍ଟା ବାଜେ । ଭୂଆସୁଣୀ ବୋହୂଟି ଚଉରା ମୂଳେ ସଞ୍ଜବତୀ ଜାଳେ ।

'ପଶ୍ଚିମ ଆକାଶେ ସୂର୍ଯ୍ୟ ଯାଉଥାଏ ବୁଡ଼ି
ଏହି ବସା ଗଛେ ପକ୍ଷୀ ଆସୁଥାନ୍ତି ଉଡ଼ି

ପୁରୁବ ଆକାଶେ ସୂର୍ଯ୍ୟ ଉଦେ ପ୍ରଭାତରେ
ଉଡ଼ନ୍ତି ପକ୍ଷୀଏ ରାବି ଏହାରି ତାଳରେ ।'

ପଲ୍ଲୀର ବିଭିନ୍ନ ଋତୁ, ପଲ୍ଲୀର ପ୍ରାତଃକାଳ, ମଧ୍ୟାହ୍ନ, ସନ୍ଧ୍ୟା, ରାତ୍ରୀ ଓ ଏହି ସମୟମାନଙ୍କରେ ପଲ୍ଲୀବାସୀଙ୍କର ଜୀବନଚର୍ଯ୍ୟାଧାରା ନନ୍ଦକିଶୋରଙ୍କ ସୂକ୍ଷ୍ମ ଦୃଷ୍ଟିରୁ ବାଦ ପଡ଼ି ଯାଇଛି ବୋଲି ମନେହୁଏ ନାହିଁ । ବିଷୟବସ୍ତୁ ସହିତ କବିତାର ଭାଷା ମଧ୍ୟ ଏ ସାହିତ୍ୟର ଦ୍ୱିତୀୟ ବିଶିଷ୍ଟ ସଂପଦ । 'ନବବର୍ଷ ଭାବନା'ରୁ ଉଦାହରଣ ନିଆଯାଇପାରେ -

'ଟିକି ନୂଆବୋହୂ ଜଳ ଆଣୁ ଆଣୁ ପାଦ ତା'ର ଗଲା ଖସି
ଦେଲେ ପିଲାମାନେ ଦାରୁଣ ଆନନ୍ଦେ କରତାଳି ହସି ହସି ।
ଶଅରୁଣୀଙ୍କର ଜାମୁଡ଼ାଳି ନାଚ କେଳାର ହାବୁଡ଼ା ଖେଳ
ଭୋଦୁଅ ମାସର ଜହ୍ନିଫୁଲ ଗୀତ ଖୁଦୁକୁଣୀ-ଓଷା ମେଳ ।'

ଏହା ସହିତ 'ପଲ୍ଲୀଚିତ୍ର' ଦ୍ୱିତୀୟ ଭାଗର ଏକ ଅଂଶ ମିଳାଇ ପାଠ କରାଯାଇପାରେ ।

'ଗଜା ବଉଦକୁ ପ୍ରବଳ ପବନ ଉଡ଼ାଇନିଏ ବହନ
ଦାଣ୍ଡ ତାଳଗଛ ବସାରେ ଦୋହଲି ବାୟା ରାବେ ଘନ ଘନ ।
ତା' ଶୁଣି ବାଳକେ ଗାଆନ୍ତି ପୁଲକେ ହୋଓରେ ବାୟା ହୋଓ
ଯେଉଁ କିଆରୀରେ ଗହଳ ଧାନ ତୁ ସେଇ କିଆରୀରେ ଶୋଓ ।'

ପଲ୍ଲୀ ପ୍ରାଣର ନିଷ୍କପଟ, ନିର୍ମଳ ଭାବନା ରାଶି ପରି ଏ ଭାଷା ମଧ୍ୟ ଥିଲା ଅତୀବ ସହଜ ଓ ସରଳ । ନିର୍ଝରର ଝର୍ଝରନାଦୀ ସ୍ୱଚ୍ଛ ପ୍ରବାହପରି ସରଳ ତରଳ ଭାଷା, ତେଣୁ ପଲ୍ଲୀକବି ପ୍ରାଣକନ୍ଦରରୁ ନିଃସୃତ ହୋଇପଡ଼ିଛି ଶାନ୍ତ ପଲ୍ଲୀ ଜୀବନର ଅଫୁରନ୍ତ ସୌନ୍ଦର୍ଯ୍ୟ ସୁଧା । ଉପରୋକ୍ତ ଦୁଇଟି ଉଦ୍ଧୃତି ଭିତରେ ଆମେ ସେଇ କମନୀୟ ଭାଷା-ବିଭବର ସାମାନ୍ୟ ପରିଚୟ ପାଇଥାଉଁ । ପ୍ରଥମଟିର ପଲ୍ଲୀ ଭାଷାରେ ଫୁଟି ଉଠିଛି କେତୋଟି ଛୋଟ ଛୋଟ ଚିତ୍ର । ପଲ୍ଲୀପ୍ରାଣ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଜାମୁଡ଼ାଳି ନାଚ, ହାବୁଡ଼ା ଖେଳ, ଜହ୍ନିଫୁଲ ଗୀତ, ଖୁଦୁରୁକୁଣୀ ଓଷା - ଏମିତି ଚିତ୍ର ପରେ ଚିତ୍ର ସ୍ୱଭାବିକ ଭାବରେ ଯେଉଁ ଭାଷାରେ ଗତି କରି ଚାଲିଛି, ସେ ଭାଷାର ଅନ୍ତର୍ନିହିତ ରୂପ ବୈଚିତ୍ର୍ୟ ଏ ମାଟିର ସଂପୂର୍ଣ୍ଣ ଓ ନିଜସ୍ୱ । ଦ୍ୱିତୀୟ ଉଦାହରଣରେ ପଲ୍ଲୀର ଗୋଟିଏ ସଂଗୀତ ଓ ଗୋଟିଏ ଢଗମାଳି ସମୁଦାୟ ପରିବେଶକୁ ଆନନ୍ଦମୁଖର ତଥା ରସସିକ୍ତ କରି ଦେଇଛି । ପଲ୍ଲୀ-ସଂଗୀତ, ପଲ୍ଲୀ-ଢଗଢ଼ମାଳି, ପଲ୍ଲୀ, ପ୍ରବଚନ ଅର୍ଥାତ୍ ପଲ୍ଲୀ-ସାହିତ୍ୟର ଏକ ଏକ ବିଶିଷ୍ଟ ରୂପ ନିଜ କବିତାରେ ସେ ବିଭିନ୍ନ ରୂପରେ ପ୍ରୟୋଗ କରି କବିତାର ଭାଷାରେ ନୂତନ ଜୀବନ ସଂଚାର କରାଇ ପାରିଛନ୍ତି ।

'ପଲ୍ଲୀଚିତ୍ର'ର ପ୍ରଥମ ଦୁଇ ଭାଗରେ ଥିବା କବିତାର ପ୍ରାୟ ପ୍ରତ୍ୟେକ ପଦ ଏକ ଏକ ପୃଥକ୍ ଚିତ୍ରର କାବ୍ୟିକ ପ୍ରତିଲିପି ମାତ୍ର । ଏ ପ୍ରତ୍ୟେକଟିରେ କଳାପ୍ରାଣର ଗଭୀର ଆଲୋଡ଼ନ, ରୂପ ପିପାସାର ଅପୂର୍ବ ଦ୍ୟୋତନା, ସୃଷ୍ଟି ରୂପାୟନର ସାର୍ଥକ କଳାକୁଶଳତା ଦୃଷ୍ଟିଗୋଚର ହୁଏ । କବିଙ୍କ ଭାଷାରେ -

'ଉଷାସମ ଗ୍ରାମ ପଥେ କିଏ ? ଏକୁଟିଆ ନବବଧୂଟିଏ
ଥୁରୁ ଥୁରୁ ହୁଏ ଜାଡ଼େ ପଥୁ ଘୁଞ୍ଚି ହୁଏ ଆଡ଼େ ।
ମୁଁ ଆଡ଼ ହୁଅନ୍ତେ ପାଦେ ବାଜି ଲାଜକୁଳୀ
କ୍ରୀଡ଼ାବତୀ ସେ ବ୍ରତତୀ ପଡ଼ିଲା ଝାଉଁଳି ।'

ସମୟର ପରିଧି ଭିତରେ ଶୀତର ଅନ୍ତର୍ଦ୍ଧାନ ଓ ନବ ବସନ୍ତର ଆଗମନ ରୂପକ ଯୋଗସୂତ୍ରରେ ଏ ପ୍ରତ୍ୟେକ ପଦର ଚିତ୍ର ଏକତ୍ର ଗ୍ରଥିତ । କବିତାର ସାମଗ୍ରିକ ରୂପ ବିଭବରେ ଯେଉଁ ଅନବଦ୍ୟ ଅନୁଭୂତି କବି ରୂପାୟନ କରିଥାନ୍ତି, ତା'ର ଗୋଟିଏ ଉଦାହରଣ ଦିଆଯାଇପାରେ-

'କାହାଲାଗି ମନ ଉଦାସ ଛନ ଛନ ମୋ' ମନ
କେଉଁ ଦେଶ ରାଜକୁମରେ, ଦେଖିଲଇଁ ସ୍ୱପନ ।
ଜଳୁଥିଲା ରତ୍ନ ପ୍ରଦୀପ, କିଳିଥିଲି କବାଟ
ଏ ପୁରେ କେମନ୍ତେ ପଶିଲେ ପାଇ କେବଣ ବାଟ ।

x x x x x

ଚମ୍ପା ଫୁଲେ କେଶ ମଣ୍ଡାଇ ହାର କଣ୍ଠେ ଲମ୍ବାଇ
ଅସ୍ପଷ୍ଟ ସ୍ୱପନେ ସୁନ୍ଦର ବେଶେ ଗଲେ ଉଭେଇ ।
ଚମ୍ପା ଫୁଲଟିଏ ପାଇଲି ବନ ହଳଦୀ ପ୍ରାୟେ
ଶିବ ଆରାଧନା କରିବି କାନ୍ତ ଭେଟିବା ଯାଏ ।'

ଚମ୍ପାବତୀ ରାଜକନ୍ୟାର ପ୍ରାଣ ଯାହା ପାଇଁ ଉଦାସ ଓ ମନ ଛନ ଛନ, ତାର ପରିଚୟ ଲାଭରେ ବିଶେଷ କିଛି ପ୍ରୟୋଜନ ନାହିଁ । ଦ୍ୱାର ରୁଦ୍ଧ, ରତ୍ନ ପ୍ରଦୀପାଲୋକିତ ରାଜପୁରୀରେ ଏହି ଅଜଣା ରାଜକୁମାରର ପ୍ରବେଶ ଏକାନ୍ତ ଅବାସ୍ତବ ଓ ଅସମ୍ଭବ । ଏହି ସମ୍ଭାବନା ଓ ବାସ୍ତବତାର ପଟ୍ଟଭୂମିରେ ଫୁଟି ଉଠିଛି ରାଜକନ୍ୟାର ଭାବ ବିହ୍ୱଳତା ଓ ସ୍ୱପ୍ନାନୁଭୂତ ଅଙ୍ଗବିକାର । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ରାଜକନ୍ୟାର ଏ କାମନାର ଶଙ୍କାହୀନ ଅଭିବ୍ୟକ୍ତି ଜୀବନ୍ତ, କି ସରସ ଓ ବାସ୍ତବ ।

ନବ ବର୍ଷ ଭାବନା, ପଲ୍ଲୀପଥ, ଏକାଟିଆ ଚଷା ଗୀତ ତଅପୋଇ (ସନ୍ଧ୍ୟା ସଂଗୀତ), ବାଟୋଇ ଓ ନାଉରିଆ (ନାନାବାୟା ଗୀତ) - ଏମିତି କବିତାମାନଙ୍କରେ ଗୋଟିଏ ଗୋଟିଏ ସମଗ୍ର ସୌନ୍ଦର୍ଯ୍ୟ ପାଠକ ମନରେ ଏକ ଏକ ସମଗ୍ର ଅନୁଭୂତି ଯେ ସୃଷ୍ଟି ନକରୁଛନ୍ତି, ତାହା ନୁହେଁ । ବିଭିନ୍ନ ଚିତ୍ର ମାଧ୍ୟମରେ ବାଲ୍ୟ ଜୀବନର ବିଭିନ୍ନ ଅନୁଭୂତି 'ନବବର୍ଷ ଭାବନା'ର ଶେଷ ତିନୋଟି ବିଭାଗରେ ଥିବା ସକାଳ, ସନ୍ଧ୍ୟା ଓ ରାତ୍ରିକାଳକୁ କ୍ରମାନ୍ୱୟରେ ଆଶ୍ରୟ କରି ଉକ୍ତ କବିତାକୁ ଏକ ପରିପୂର୍ଣ୍ଣ ପରିଣତି ଦିଗକୁ ଗତି କରାଇଛି । 'ଏକାଟିଆ ଚଷାଗୀତ' କବିତାରେ ଛନ୍ଦର କମନୀୟ ସ୍ୱର ଝଙ୍କାର ସଂଗେ ଅନୁଭୂତିର ତୀବ୍ରତର ଆବେଗ ପାଠକ ମନରେ ଶାଶ୍ୱତ ପ୍ରେମର ଅନିର୍ବଚନୀୟ କରୁଣ ମୂର୍ଚ୍ଛନା ସୃଷ୍ଟି କରି ସମଗ୍ର କବିତାଟିକୁ ଏକ ପରମ ରସ ଘନ-ରୂପ ପ୍ରଦାନ କରିଛି । 'ବାଟୋଇ ଓ ନାଉରିଆ' କବିତାରେ ସେଇ ଏକ ସୃଷ୍ଟି ବିଭବ ପରିଲକ୍ଷିତ ହୁଏ । 'ତଅପୋଇ'ରେ ଅତୀତ କାହାଣୀ ଏକ ଗତାନୁଗତିକ ଧାରାରେ ପ୍ରବାହିତ, ତଥାପି ଶେଷ ଭାଗରେ ଥିବା ନୂତନ ପରିକଳ୍ପିତ ରୋମାଣ୍ଟିକ ପ୍ରେମ କାହାଣୀ ସମୁଦାୟ କବିତାଟିକୁ ସଂପୂର୍ଣ୍ଣ ଅଭିନବ ରୂପ ଦେଇପାରିଛି । କାକବାରତା, ଜେମା ଦେଈ, କଳଙ୍କିନୀ, ଚମ୍ପାବତୀ, ରାଜକନ୍ୟାର ସ୍ୱପ୍ନ, ପାରାଯୋଡ଼ିକ, ସୁନାପଇତା ପରି କବିତାମାନଙ୍କର ସୃଷ୍ଟି ପରିକଳ୍ପନା ଉନ୍ନତ ଓ ସଂପୂର୍ଣ୍ଣ ନୂତନ ।

ଜନ୍ମ ତା.୨୨.୧୨.୧୮୭୫ଠାରୁ କଲେଜ ଶିକ୍ଷା ଆରମ୍ଭ (୧୮୯୫) ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ କାଳ କବି ପଲ୍ଲୀ ଜୀବନ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । ଏ ସମୟ ମଧ୍ୟରେ ତାଙ୍କର ଶୈଶବ କାଳ ତଦାନ୍ତୀନ୍ତନ ପଲ୍ଲୀ ଜୀବନ ପ୍ରବାହରୁ ଯେଉଁ ଅନୁଭୂତି ପାଇଥିଲା, ତାହା ହେଉଛି ନନ୍ଦକିଶୋରଙ୍କ ପଲ୍ଲୀ କବିତାର ପ୍ରଧାନ ଉପାଦାନ ।

କବି ସରସ୍ୱତୀଙ୍କୁ ଆରାଧନା କରି ସେ ଲେଖିଛନ୍ତି-

'ଯାଆନ୍ତୁ କମଳା ସୁଖ ସୌଧେ ସଖୀଗଣ
ଦରିଦ୍ର କୁଟୀରେ ମମ ଯାପିବି ଜୀବନ
ସାରସ୍ୱତ ଭଣ୍ଡାରରୁ କବୀନ୍ଦ୍ର ବନିତା
ବାଛିଦିଅ ଭାରତୀଗୋ ଦୁର୍ଲଭ କବିତା ।'

କବିଙ୍କର ଜୀବନ ଦର୍ଶନର ସୂଚନା ନିମ୍ନଲିଖିତ ପଦମାନଙ୍କରୁ ମିଳିଥାଏ ।

'ହେଉ ବା ନହେଉ ସଂସାର ମୋର ପରାଣଧନ,
ତବ ପ୍ରେମ ଅଙ୍କେ ପ୍ରେୟସି ! ଯାଉ ଏ ମୋ ଜୀବନ ।
ପ୍ରାଣର ଶରୀର ବେଦନା ନ ପାରଇ ମୁଁ ସହି,
ଆକୁଳ ଆବେଗ ନିରତେ ମୁଁ ଯେ ହୁଅଇ ଦହି,
କେତେ କେତେ ଜନ ଉଭେଇ ଯିବେ ଦୁଇ ଦିନରେ
ମୋ' ପ୍ରାଣ ଗୌରମ ମହକୁ ଥିବ ଏ ଭୁବନରେ
ଅତିକ୍ରମି ମୁଁ ଏ ଉଦର ଲଭି ଶାଶ୍ୱତ ଧନ
ଲୌହ-ପ୍ରାଣ ଦେଇ ପାଇବି ସହି ହୈମ ଜୀବନ ।'

ଅଥବା,

'ଉଡ଼ିଗଲା ବଣି ଚଢ଼େଇ କରି ନାହିଁ ନାହିଁ
ଲୋଡ଼ା ନାହିଁ ଘର ଦୁଆର ବଣ ଭଲ ଭାଇ ।'

କବିଙ୍କର ପଲ୍ଲୀବଧୂ ଅଙ୍କିତ ହୋଇଛି ବି. ବର୍ମାଙ୍କ ଛବିରେ । ଫକୀରମୋହନ ହେଉଛନ୍ତି ବାସ୍ତବରେ ତାଙ୍କର ଯୋଗ୍ୟତମ ଗ୍ରାହକ । କବି କୁଞ୍ଜ ବିହାରୀ ଦାଶଙ୍କ ଭାଷାରେ-

'ତୁମରି କବିତାମାଳା ଲୋକେ ଦିଏ କହି
ଚିନ୍ତାବିନା କଲମରୁ ପଡ଼ିଛିକି ବହି
ପଢ଼ିଗଲି ବେଳେ ପଲ୍ଲୀ ପ୍ରସଙ୍ଗ ବାରତା
କେହି କବି କହି ନାହିଁ ଏ ପ୍ରକାର କଥା ।'

**ସହାୟକ ଗ୍ରନ୍ଥସୂଚୀ**


୧. ସାମନ୍ତରାୟ, ନଟବର- ନନ୍ଦକିଶୋର ସାହିତ୍ୟ ସମୀକ୍ଷା, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୨୦୦୪ ।

୨. ଦାଶ, କୁଞ୍ଜବିହାରୀ - ଜୀବନୀ ଓ ଜୀବନ ।

୩. ପାଣିଗ୍ରାହୀ, ସୁରେନ୍ଦ୍ର ନାଥ - ନନ୍ଦ କିଶୋରଙ୍କ ସୃଷ୍ଟି ସମଗ୍ରରେ ପଲ୍ଲୀ ଜୀବନ ଚିତ୍ରର ସୌନ୍ଦର୍ଯ୍ୟ ବୋଧତା : ଅଭିଯାନ, ଭଲ୍ୟୁମ- ୧୦, ଏନ୍.ଭି., ସେପ୍ଟେମ୍ବର-ଅକ୍ଟୋବର, ୨୦୦୬, ପୃ.୩୪ ।



ଗ୍ରନ୍ଥାଗାର ଓ ସୂଚନା ବିଜ୍ଞାନ ବିଭାଗ
ଚାନ୍ଦବାଲି କଲେଜ, ଭଦ୍ରକ




# କାନ୍ତକବି ଲକ୍ଷ୍ମୀକାନ୍ତ : ଏକ ବହୁମୁଖୀ ପ୍ରତିଭା

ଶାନ୍ତନୁ କୁମାର ଆଚାର୍ଯ୍ୟ

**ସ**ଭାପତି, ଫକୀରମୋହନ ବିଶ୍ୱବିଦ୍ୟାଳୟର କୁଳପତି ମହୋଦୟ ! ମଞ୍ଚସ୍ଥ କୁଳସଚିବ, ଭଦ୍ରକ ସ୍ୱୟଂଚାଳିତ ମହାବିଦ୍ୟାଳୟର ଅଧକ୍ଷ ଏବଂ ଉପସ୍ଥିତ ସୁଧୀବୃନ୍ଦ !

ଆଜି ଭଦ୍ରକ ସ୍ୱୟଂଚାଳିତ ମହାବିଦ୍ୟାଳୟର ଏଇ ସଭାଗୃହରେ ଆୟୋଜିତ କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମାରକୀ ବକ୍ତୃତାମାଳାର ପ୍ରଥମ ବକ୍ତାଭାବେ ମନୋନୀତ କରି ଏହି ବକ୍ତବ୍ୟ ପ୍ରକାଶ ପାଇଁ ସୁଯୋଗ ଦିଆଯାଇଥିବାରୁ ମୁଁ ଉଦ୍ୟୋକ୍ତାମାନଙ୍କ ପ୍ରତି ଆନ୍ତରିକ ଧନ୍ୟବାଦ ଓ କୃତଜ୍ଞତା ଜ୍ଞାପନ କରୁଛି ।

ସଭା ଆରମ୍ଭରେ ଆମେ ଏ ଗୃହରେ ସ୍ଥାନିତ କାନ୍ତକବିଙ୍କ ପ୍ରତିକୃତିରେ ପୁଷ୍ପମାଲ୍ୟ ଏବଂ ପାଦାର୍ଘ୍ୟ ପ୍ରଦାନ କରିଛୁ । ସେହି ତୈଳଚିତ୍ରରେ ପ୍ରତୀକିତ ଦେବବିଗ୍ରହ ତୁଲ୍ୟ ଦୃଶ୍ୟମାନ ସାରସ୍ୱତ ବିପ୍ଳବୀ ସ୍ୱର୍ଗତଃ ଲକ୍ଷ୍ମୀକାନ୍ତଙ୍କ ଅମର ସ୍ମୃତିପ୍ରତି ମୁଁ ପୁନର୍ବାର ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

କାନ୍ତକବିଙ୍କର ଏହି ଦେବବିଗ୍ରହ ସଦୃଶ ରୂପ କେବଳ ମତେ ବା ଆପଣଙ୍କ ପରି ସାମ୍ପ୍ରତିକ କାଳର ମଣିଷମାନଙ୍କୁ ଚମତ୍କୃତ କରି ନାହିଁ, ଅତୀତରେ ମଧ ଲକ୍ଷ୍ମୀକାନ୍ତଙ୍କ ଏ ରୂପଲାବଣ୍ୟ ଅନେକଙ୍କୁ ସମ୍ମୋହିତ କରିଥିଲା ଯାହା ତାଙ୍କର ଏପରି ନମନୀୟ କମନୀୟ ଏକ ଉପାଧିକୁ ରୂପାନ୍ତରିତ ହୋଇଥିବା ଅନୁମାନ ।

ଲକ୍ଷ୍ମୀକାନ୍ତଙ୍କ ଜୀବନୀକାରମାନେ କହନ୍ତି - ସେ ଜଣେ ପ୍ରତିଭାଧର କବିଭାବେ ତରୁଣ ଅବସ୍ଥାରୁ ପରିଚିତ । ସ୍କୁଲରେ ପଢ଼ିଲା ବେଳୁ ସେ ଗାଁରେ ଯାତ୍ରା ଅଭିନୟ କରୁଥିଲେ ଆଉ ଗୀତ ଲେଖୁଥିଲେ । କଲେଜରେ ସେ ହୋଇଥିଲେ - ନାରୀ ଭୂମିକାରେ ଅବତୀର୍ଣ୍ଣ । ଭିକାରୁଣୀ ଏବଂ ଭଦ୍ରା ଇତ୍ୟାଦି ଚରିତ୍ରର ଅଭିନେତ୍ରୀ । ୧୯୧୨, ସେତେବେଳର ସମ୍ରାଟ ପଞ୍ଚମ ଜର୍ଜଙ୍କ ଅଭିଷେକ ଉତ୍ସବ ପାଳନ ଉପଲକ୍ଷେ ରେଭେନ୍ସା କଲେଜର ଛାତ୍ରମାନେ ଉତ୍ସବ ମନାଇବାକୁ ସ୍ଥିରକରି ପ୍ରସିଦ୍ଧ ନାଟ୍ୟକାର ରାମଶଙ୍କରଙ୍କର 'କାଞ୍ଚିକାବେରୀ' ନାଟକ ମଞ୍ଚସ୍ଥ କରିବାକୁ ବାହାରି ପଡ଼ିଥିଲେ । ସେଥିପାଇଁ ଅଭିନେତାଙ୍କ ଅଭାବ ନଥିଲା, ଅଭାବ ଥିଲା ଅଭିନେତ୍ରୀଙ୍କର । କଲେଜ ଛାତ୍ରୀମାନେ ଥିଏଟରରେ ଅଂଶଗ୍ରହଣ କରିବା ଥିଲା ସାମାଜିକ ଦୃଷ୍ଟିରୁ ଅସଙ୍ଗତ । ତେଣୁ 'କାଞ୍ଚିକାବେରୀ' ନାଟକରେ ଆବଶ୍ୟକ ଥିଲା ଏକାଧିକ ନାରୀ ଭୂମିକାରେ ଅବତୀର୍ଣ୍ଣଯୋଗ୍ୟ ପୁରୁଷ ଅଭିନେତା । ସେଇ ଅଭାବ ପୂରଣ କରିଥିଲେ ଯୁବକ ଲକ୍ଷ୍ମୀକାନ୍ତ, ଯେ ମଧ ଥିଲେ ନାଟକର ସଂଗୀତ ନିର୍ଦ୍ଦେଶକ ।

ସେ ରାତ୍ରିରେ ଏକାଧିକ ନାରୀ ଚରିତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ପ୍ରଥମେ ଭିକାରୁଣୀ, ପରେ ଏକତାରା ବଜାଇ ଭଜନ ଗାଉଥିବା ଚରିତ୍ର ଭଦ୍ରା । ପୁନଶ୍ଚ ଦରକାର ପଡ଼ିଲା ଜଣେ ନର୍ତ୍ତକୀର ଯେ ସମ୍ରାଟ ପୁରୁଷୋତ୍ତମଙ୍କ ରାଜଦରବାରରେ ନୃତ୍ୟ କରିବ । ସେଦିନ ଥିଏଟରରେ ଏ ଭୂମିକା ନେଇ ନିଜକୁ ପ୍ରସ୍ତୁତ କରିଥିବା ଅଭିନେତା ଛାତ୍ର ହଠାତ୍ କୌଣସି କାରଣରୁ ଅନୁପସ୍ଥିତ ହେଲେ । ତେଣୁ ଛାତ୍ରନେତା ଏବଂ ନାଟକ ନିର୍ଦ୍ଦେଶକ, ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରସିଦ୍ଧ ନାଟ୍ୟକାର ଗୋବିନ୍ଦ ଶୂରଦେଓଙ୍କ ପଡ଼ିଲା ଭାଳେଣି, କିନ୍ତୁ ଏ ସମସ୍ୟା ସମାଧାନର ବାଟ ଫିଟିଗଲା । ସଂଗୀତ ନିର୍ଦ୍ଦେଶକ ଲକ୍ଷ୍ମୀକାନ୍ତ ତତ୍‌କ୍ଷଣାତ୍ ମେକ୍‌ଅପ୍ ନେଇ ପଶିଗଲେ ମଞ୍ଚ ଉପରକୁ । ନର୍ତ୍ତକୀ ବେଶରେ ତାଙ୍କର ସମ୍ମୋହନକାରୀ ରୂପ ଏବଂ ଅଭିନୟରେ କେବଳ ସମ୍ରାଟ ପୁରୁଷୋତ୍ତମ (ପରବର୍ତ୍ତୀ କାଳର ପ୍ରସିଦ୍ଧ ଚିନ୍ତାମଣି ଆଚାର୍ଯ୍ୟ)

ମୁଗ୍ଧ ହୋଇନଥିଲେ, ସାରା ଦର୍ଶକମଣ୍ଡଳୀ ମଧ୍ୟ ସମ୍ମୋହିତ । ତେବେ ଏ ସମ୍ପର୍କରେ ମଜା କଥାଟି ହେଲା- କଲେଜର ଛାତ୍ରମାନେ ତା' ପରଦିନ ପ୍ରିନ୍ସିପାଲ ସ' ସାହେବଙ୍କୁ ଭେଟି ପ୍ରତିବାଦ ଜଣାଇଲେ ଯେ ରେଭେନ୍ସା କଲେଜ ଭଳି ଏକ ପବିତ୍ର ଶିକ୍ଷାନୁଷ୍ଠାନକୁ ଜଣେ ବାରାଙ୍ଗନା (ବେଶ୍ୟା)କୁ ନୃତ୍ୟ ପ୍ରଦର୍ଶନ ପାଇଁ ଡାକିଥିବାରୁ ନାଟକ ନିର୍ଦ୍ଦେଶକ ଗୋବିନ୍ଦ ଶୂରଦେଓ ଏବଂ ଲକ୍ଷ୍ମୀକାନ୍ତଙ୍କ ପ୍ରତି ଉପଯୁକ୍ତ ଦଣ୍ଡ ବିଧାନ କରାଯାଉ ।

ଅଧ୍ୟକ୍ଷ ସ' ସବୁ ଅଭିଯୋଗ ଶୁଣିବା ପରେ ଲକ୍ଷ୍ମୀକାନ୍ତଙ୍କୁ କଲେଜର ପୋଏଟ୍ଲରିଏଟ ଉପାଧି ପ୍ରଦାନ କରିଥିଲେ । ସେତେବେଳକୁ ଲକ୍ଷ୍ମୀକାନ୍ତ ଜଣେ କବି ଓ ଗାଳ୍ପିକ ଭାବେ ପ୍ରସିଦ୍ଧି ଲାଭ କରିସାରିଥିଲେ । ଲକ୍ଷ୍ମୀକାନ୍ତ ଖାଲି ଗୀତ ଲେଖିବାରେ ଓସ୍ତାଦ୍ ନଥିଲେ, ସେ ମଧ୍ୟ ଗୀତ ବୋଲିବା ଆଉ ନାଚିବାରେ ଥିଲେ ଓସ୍ତାଦ୍ ।

ଏହିଭଳି ଜଣେ ଗାନ୍ଧର୍ବ ବିଦ୍ୟା ବିଶାରଦଙ୍କୁ ଦେବବିଗ୍ରହ ରୂପେ ଆମ ଏଇ ଚିତ୍ରପଟରେ ଦେଖିବାକୁ ପାଉଛୁ । ତେବେ ଏ ବିଗ୍ରହ ଯେ ଦିନେ ସ୍ୱର୍ଗରୁ ଆସନଚ୍ୟୁତ ହୋଇ ପରିଣତ ହୋଇଥିଲେ ତାଙ୍କର ଆଦ୍ୟ ଯୌବନରେ, ଏକ ବିକଳାଙ୍ଗ ଅଭିଶପ୍ତ ଗନ୍ଧର୍ବରେ । ଏହା ହିଁ ଥିଲା ଲକ୍ଷ୍ମୀକାନ୍ତଙ୍କ ଜୀବନୀ ଲେଖକ ଏବଂ ତାଙ୍କ ସାରସ୍ୱତ କୀର୍ତ୍ତିର ଯଥାର୍ଥ ଆକଳକମାନଙ୍କ ପାଇଁ ଏ ଦୁର୍ଲଂଘ୍ୟ ବାସ୍ତବତା ! -ଯାହାକୁ ହାତେଇବା ସତରେ ଏକ କଠିଣ ସମସ୍ୟା ସେମାନଙ୍କ ପକ୍ଷରେ । ସେଥିପାଇଁ ଓଡ଼ିଆ ସାହିତ୍ୟ-ଇତିହାସରେ ଅନେକ ଅବିଚାର କରାଯାଇଛି ଏହି ବହୁମୁଖୀ ପ୍ରତିଭାଙ୍କ ସ୍ଥାନ ନିର୍ଦ୍ଧାରଣର ଯଥାର୍ଥତାରେ ।

ଲକ୍ଷ୍ମୀକାନ୍ତଙ୍କୁ ସ୍ନେହରେ ତାଙ୍କ କଲେଜ ପଢୁଆ ବନ୍ଧୁମାନେ ଡାକୁଥିଲେ କାନ୍ତକବି । ସେମାନେ କିଛି କମ୍ ଓଜନଦାର ଛାତ୍ର ନଥିଲେ । ସେମାନେ ଥିଲେ - ଚିନ୍ତାମଣି ଆଚାର୍ଯ୍ୟ, ଆର୍ତ୍ତବଲ୍ଲଭ ମହାନ୍ତି, ସଚ୍ଚିଦାନନ୍ଦ ରାୟ (ଓଡ଼ିଶାର ଏକଦା ଶିକ୍ଷା ନିର୍ଦ୍ଦେଶକ-ଡି.ପି.ଆଇ.) ପ୍ରଭୃତି । କୋମଳ, ମନୋମୁଗ୍ଧକର କବିତା ଲେଖିବା ସେ ସମୟର ଏକ ବଡ଼ ଯୋଗ୍ୟତା ଥିଲା ନିଶ୍ଚୟ । ଆଜି କିନ୍ତୁ ଏହା ଜଣେ ଉଚ୍ଚାଭିଳାଷୀ କବିର ଲକ୍ଷଣ ବୋଲି ଗଣାଯାଉନାହିଁ । ଏମାନଙ୍କୁ କୁହାଯାଏ ଗୀତିକାର । ତେବେ ଏଇ ଯୋଗ୍ୟତା ଯୋଗୁଁ ସେଦିନ ୧୯୩୪ରେ, ଲକ୍ଷ୍ମୀନାରାୟଣ ସାହୁ ଲକ୍ଷ୍ମୀକାନ୍ତଙ୍କୁ ସାଧାରଣ ସଭାରେ ସେଇ ଉପାଧିଟି ଅର୍ପଣ କଲେ-କାନ୍ତକବି । ସାହୁ ମହାଶୟ କିଛି କମ୍ ଲୋକ ନଥିଲେ । ସେ ଥିଲେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପରି ସମ୍ମାନିତ ଜଣେ ସମାଜସେବୀ । ତେଣୁ ତାଙ୍କ ପ୍ରଦତ୍ତ ଉପାଧିଟିକୁ ଆଜି ପର୍ଯ୍ୟନ୍ତ ସମ୍ମାନ ଦିଆଯାଉଛି । ତେବେ ଏ ଯୁଗ ପାଇଁ ଯାର ମୂଲ୍ୟ ଖୁବ୍ କମ୍ । କାରଣ ଅନେକଙ୍କ ମତରେ ଆଜିକାଲି କମ୍‌ସେ କମ୍ ଗୋଟାଏ ଡକ୍ଟରେଟ ବା ପଦ୍ମଶ୍ରୀ ଉପାଧି ନଥିବା ଲୋକକୁ ଲେଖକ ବା କବି କୁହାଯିବା ଦୟା କଲାପରି କଥା, କିନ୍ତୁ ଲକ୍ଷ୍ମୀକାନ୍ତଙ୍କ ସାହିତ୍ୟ କୃତିର ସାମଗ୍ରିକ ଅଧ୍ୟୟନ କରିଥିବା ସମାଲୋଚକ ତାଙ୍କର ଏଇ କାନ୍ତକବି ଉପାଧିଟିକୁ ଚୂଡ଼ାନ୍ତ ମନେ କରନ୍ତି ନାହିଁ । କାରଣ ଲକ୍ଷ୍ମୀକାନ୍ତ ଜଣେ କବି ନୁହଁନ୍ତି କେବଳ, ସେ ଜଣେ ବହୁମୁଖୀ ପ୍ରତିଭା, ଠିକ୍ ଫକୀରମୋହନଙ୍କ ପରି । ଏହି ପ୍ରତିଭାଧର ବ୍ୟକ୍ତିଙ୍କୁ ବ୍ୟାସକବି, କାନ୍ତକବି ଇତ୍ୟାଦି ଉପାଧି ପ୍ରକୃତରେ ସୁହାଏ ନାହିଁ । କାରଣ ଏ ଦୁହେଁ ଥିଲେ ସମଗୋତ୍ରୀ ଏବଂ ଭୀଷଣ ଲଢୁଆ ମନୋବୃତ୍ତିର ବ୍ୟକ୍ତିତ୍ୱ । ସେମାନଙ୍କ ପାଇଁ କବିତା ଲେଖିବା ଖୁବ୍ ଗୋଟାଏ ବଡ଼ ବ୍ୟାପାର ନୁହେଁ । ଏ କଥା ଫକୀରମୋହନଙ୍କ ଜୀବନୀ ଅନୁସନ୍ଧାନରୁ ବେଶ୍ ବୁଝିହୁଏ । ସେହିପରି ଲକ୍ଷ୍ମୀକାନ୍ତଙ୍କ ଜୀବନୀ ଏବଂ ତାଙ୍କର ଶତାଧିକ ରଚନାବଳୀ ଅନ୍ତର୍ଗତ ବିଭିନ୍ନ ବିଭାଗରେ ପ୍ରକାଶିତ ଦୋରସ୍ତ ଗଦ୍ୟଶୈଳୀରେ ଲିଖିତ ରସସାହିତ୍ୟ (ଉପନ୍ୟାସ, ନାଟକ, ବ୍ୟଙ୍ଗସାହିତ୍ୟ) ଏବଂ ପ୍ରବନ୍ଧ (ବାସ୍ତବରେ ଆତ୍ମଜୀବନୀ, ଉପନ୍ୟାସିକା, ଗଳ୍ପ ଇତ୍ୟାଦି)ଗୁଡ଼ିକୁ ପାଠକଲେ ଆଜିର ସଚେତନ ପାଠକ ସହଜରେ ବୁଝିପାରିବ କାହିଁକି ଲକ୍ଷ୍ମୀକାନ୍ତଙ୍କୁ କବି ନ କହି ଔପନ୍ୟାସିକ ବା ଗାଳ୍ପିକ ଉପାଧି ଦେଇଥିଲେ ତାଙ୍କର ପ୍ରତିଭା ପ୍ରତି ଆଦୌ ଅବମାନନା କରାଯାଇନଥାନ୍ତା ।

ଆଜିର ଆଲୋଚନାରେ ମୁଁ ଲକ୍ଷ୍ମୀକାନ୍ତଙ୍କର ଏଇ ବହୁମୁଖୀ ପ୍ରତିଭା ସମ୍ପର୍କରେ କିଞ୍ଚିତ୍ ଆଲୋକପାତ କରିବି । ପ୍ରଥମେ ଦେଖାଯାଉ - ଲକ୍ଷ୍ମୀକାନ୍ତଙ୍କ ସାରସ୍ୱତ ପ୍ରତିଭା ଆକଳନର ଯଥାର୍ଥତା ପ୍ରତି କିପରି ଓଡ଼ିଆ ସାହିତ୍ୟର ସମାଲୋଚନା ଏବଂ ଇତିହାସ ରଚନାରେ ଅବହେଳା କରାଯାଇଛି । ଏହି ପରିପ୍ରେକ୍ଷୀରେ ମୁଁ ଆମର ପୂର୍ବ ପିଢ଼ିର ଦିଗ୍‌ଗଜ କବି ସାହିତ୍ୟିକ ସମାଲୋଚକ ଏବଂ ଓଡ଼ିଆ ସାହିତ୍ୟର ଐତିହାସିକ ଡକ୍ଟର ମାୟାଧର ମାନସିଂହଙ୍କର ଲକ୍ଷ୍ମୀକାନ୍ତଙ୍କ ପ୍ରତି କିଭଳି ମନୋଭାବ ଥିଲା ତାହାର ନମୁନା ଏଠାରେ ଉଲ୍ଲେଖ କରୁଛି ।

କେବଳ ଡକ୍ଟର ମାନସିଂହ ନୁହନ୍ତି, ତାଙ୍କପରି ସେସମୟର ଅଧିକାଂଶ ଇଂରାଜୀ ଅଧ୍ୟାପନା ଏବଂ ସମାଲୋଚନା ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିବା ବ୍ୟକ୍ତିମାନେ ଭାରତୀୟ କବି ଲେଖକମାନଙ୍କ ପ୍ରତି ଏହି ଦୈନ୍ୟ ମନୋଭାବ ପ୍ରଦର୍ଶନ କରୁଥିଲେ ।

ସେଇ ମନୋଭାବର ନମୁନାଟି ହେଲା - ମାନସିଂହଙ୍କ ରଚିତ 'ହିଷ୍ଟ୍ରି ଅଫ୍ ଓଡ଼ିଆ ଲିଟରେଚର', କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପ୍ରକାଶିତ ୧୯୬୨ ସଂସ୍କରଣର ଅଧ୍ୟାୟ ତେର ଅନ୍ତର୍ଗତ 'ଅଦର ଲାଇଟସ୍ ଇନ୍ ପୋଏଟ୍ରି' ଶୀର୍ଷକ ଲେଖାରୁ ନିମ୍ନ ପ୍ରଦତ୍ତ ଉଦ୍ଧୃତାଂଶ-

'Lakshmikanta never attempted anything ambitious-it was no physically possible for him to do so...

... Essentially lyrical and ready charmer of the moment. And so his work consists of only scattered songs and satires, both in prose and verse and excellent parodies.

The satires though entertaining, in their times, particularly those aimed at the hypocrisies of the Congressites, are losing topical significance. Some of his devotional and patriotic poems have however come to stay.'

ସର୍ବଭାରତୀୟ ସ୍ତରରେ ଓଡ଼ିଆ ସାହିତ୍ୟର ଇତିହାସକୁ ଇଂରାଜୀ ଭାଷାରେ ପାଠ କରିବାର ଦକ୍ଷତା ଅର୍ଜନକାରୀ ବ୍ୟକ୍ତିବିଶେଷଙ୍କୁ କୁହାଯାଏ ବୌଦ୍ଧିକ ବା ଏଲିଟସ୍ । ଏ ଏଲିଟସ୍‌ମାନେ ଯେତେବେଳେ ଜାଣିଲେ ଯେ ରାଧାନାଥ, ଫକୀରମୋହନ, ମଧୁସୂଦନ ନାମଧାରୀ ତିନି ପ୍ରଚଣ୍ଡ ପ୍ରତିଭାବନ୍ତ (ଦ ଗ୍ରେଟ୍ ଟ୍ରାୟୋ-ମାନସିଂହଙ୍କ ଭାଷାରେ)ଙ୍କ ଅନ୍ତେ ଓଡ଼ିଆ ସାହିତ୍ୟରେ ଏପରିକି କିଛି ଅଦର ଲାଇଟସ୍ ଅର୍ଥାତ୍ ମିଞ୍ଜିମିଞ୍ଜି ଦୀପାବଳି ମଧ୍ୟ ଥିଲେ ସେତେବେଳେ ସେମାନଙ୍କ ଦୃଷ୍ଟି ନଇଁ ଆସିବା ସ୍ୱାଭାବିକ । ନିମ୍ନାବତରଣ ଚାହାଣିରେ ରାଧାନାଥ ଫକୀରମୋହନଙ୍କ ପରବର୍ତ୍ତୀ କାଳକୁ ଚାହିଁଲେ ଦିଶିବେ ତିନି ଚାରିଜଣ ଯାହାଙ୍କୁ କୁହାଯିବ କି ମିଞ୍ଜିମିଞ୍ଜି ଦୀପାଲୋକ ? ପୁଣି କିଏ ଏମାନେ ? ଏ ଶ୍ରେଣୀଭୁକ୍ତ ହେଲେ - ଗଙ୍ଗାଧର, କୁନ୍ତଳା କୁମାରୀ, ନନ୍ଦକିଶୋର ଆଉ ଲକ୍ଷ୍ମୀକାନ୍ତ । ମାନସିଂହଙ୍କ ବିଚାରରେ ଏ ତାଲିକାର ସର୍ବଶେଷରେ ସ୍ଥାନ ମିଳିବ ଲକ୍ଷ୍ମୀକାନ୍ତଙ୍କୁ । କାରଣ ତାଙ୍କର ଉଚ୍ଚାଭିଳାଷ ନଥିଲା ଏବଂ ସେ ଥିଲେ ଜଣେ ଗୀତିକାର କେବଳ । ପୁଣି ତାଙ୍କର ଅନ୍ୟ ଦୁର୍ବଳତା ହେଲା - 'କ୍ଷଣିକ ଚମତ୍କାରିତା' (ରେଡ଼ି ଚାର୍ମର) । ଏ ସବୁ ବୌଦ୍ଧିକ ବିଚାରର ଫଳ-ଲକ୍ଷ୍ମୀକାନ୍ତ ହେଲେ ସାହିତ୍ୟ ଆକାଶର ରାହୁଗ୍ରସ୍ତ ପୂର୍ଣ୍ଣଚନ୍ଦ୍ର ।

ପୁନଶ୍ଚ ଉପରୋକ୍ତ ଉଦ୍ଧୃତାଂଶରେ ମାନସିଂହଙ୍କ ଅନ୍ୟତମ ଅବିଚାରକୁ ଲକ୍ଷ୍ୟ କରାଯାଉ । ଆଧୁନିକ ସାହିତ୍ୟ ବିଚାରରେ ଯାହାକୁ କୁହାଯାଆନ୍ତା ଉତ୍ତରାଧୁନିକ ତାହା ମାନସିଂହଙ୍କ ଭାଷାରେ ଏକ ତାତ୍କାଳିକ ମନୋରଞ୍ଜକ ସାମଗ୍ରୀ ମାତ୍ର, ସୁତରାଂ ବର୍ତ୍ତମାନ ଯୁଗ ପାଇଁ ନିରର୍ଥକ । କାରଣ ଲକ୍ଷ୍ମୀକାନ୍ତଙ୍କ 'ଅସହଯୋଗୀର ଆତ୍ମକଥା' ମାନସିଂହ ଦୃଷ୍ଟିରେ, ଆଉ କଂଗ୍ରେସିଆଙ୍କ ପ୍ରତି ହାସ୍ୟ ଉତ୍ପାଦନ ମଧ୍ୟ କରିବାକୁ ଅସମର୍ଥ । ତେଣୁ ମୂଲ୍ୟହୀନ । ମୋ' ମତରେ ଏ ଏକ ହୁଙ୍କାପିଟା ବିଚାର । ଏଭଳି ମତାମତର ପୁନର୍ବିଚାର ଅତ୍ୟନ୍ତ ଜରୁରୀ । ସେହି ଲକ୍ଷ୍ୟରେ ଲକ୍ଷ୍ମୀକାନ୍ତଙ୍କ ପ୍ରତିଭାର ସାମଗ୍ରିକ ଦିଗକୁ ଦୃଷ୍ଟିରେ ରଖି ମୁଁ ତାଙ୍କର ଏହି କାଳଜୟୀ ଉପନ୍ୟାସ 'ଅସହଯୋଗୀର ଆତ୍ମକଥା' ଉପରେ ମୋ' ବକ୍ତବ୍ୟର ଭାରକେନ୍ଦ୍ର ସ୍ଥାପନ କରିବାକୁ ଇଚ୍ଛୁକ ।

ଏହି ଲକ୍ଷ୍ୟରେ ଆଉଥରେ ମୂଳରୁ ସୂଚାଇଦେବାକୁ ଚାହେଁ ଯେ ପ୍ରତିଭା ଦୃଷ୍ଟିରୁ ଲକ୍ଷ୍ମୀକାନ୍ତ ଫକୀରମୋହନଙ୍କ ସମକକ୍ଷ ଜଣେ ବହୁମୁଖୀ ପ୍ରତିଭା । ସେ ଉଭୟ ଗଦ୍ୟ ପଦ୍ୟ ଏବଂ ତାଙ୍କ ସମୟର ସାହିତ୍ୟରେ ଯାହାକୁ କୁହାଯାଉଥିଲା ଆଧୁନିକ ଅର୍ଥାତ୍ ବାସ୍ତବବାଦୀ ଶୈଳୀ ସେଥିରେ ମଧ୍ୟ ସେ ଥିଲେ ଫକୀରମୋହନଙ୍କ ସମସରି ।

ଏଠାରେ ସ୍ମରଣ ରଖିବାକୁ ହେବ ଯେ ଫକୀରମୋହନ ଆଦୌ ତାଙ୍କ ଜୀବନକାଳରେ ଯୁଗପ୍ରବର୍ତ୍ତକର ଐତିହାସିକ ସମ୍ମାନଲାଭ କରିବାର ସ୍ୱପ୍ନ ମଧ୍ୟ ଦେଖିନଥିଲେ । ତାଙ୍କ ଜୀବଦ୍ଦଶାରେ ସେ ବଞ୍ଚିଥିଲେ ରାଧାନାଥଙ୍କ ଯୁଗରେ । ୧୮୪୩ରେ ତାଙ୍କର ଜନ୍ମ ଏବଂ ମୃତ୍ୟୁ ୧୯୧୮ । ସେତେବେଳକୁ ସେ ପ୍ରଥମ ବିଶ୍ୱଯୁଦ୍ଧ ପାରି ହୋଇଗଲେଣି । ରାଧାନାଥଙ୍କ ଦେହାନ୍ତ ଘଟିଗଲାଣି ମଧ୍ୟ, କିନ୍ତୁ ରାଧାନାଥଙ୍କ ଯୁଗ ଶକ୍ତିଶାଳୀ ହେଉଥାଏ ସିନା ଦୁର୍ବଳତାର ଲକ୍ଷଣ ଦିଶୁନଥାଏ । ଫକୀରମୋହନ ତଥାପି ଜଣେ ହାସ୍ୟବ୍ୟଙ୍ଗର କବି । ତେଣୁ ରାଧାନାଥ ଯୁଗରେ ଫକୀରମୋହନଙ୍କୁ ସମାଲୋଚକମାନେ ନିମ୍ନ ଦୃଷ୍ଟିରେ ହିଁ ଦେଖିବାକୁ ବାଧ୍ୟ । କାରଣ ତାଙ୍କ ଯୁଗ ତଥାପି ଅଦୃଶ୍ୟ । ସେ ଯୁଗ ଆସିଲା କେବେ ? ଆସିଲା ୧୯୪୭ ଅଗଷ୍ଟ ୧୫ ପରେ । କାରଣ ଭାରତର ସ୍ୱାଧୀନତା ଫକୀରମୋହନଙ୍କୁ ତାଙ୍କ ପ୍ରାପ୍ୟ ଆଣି ଦେଲା । ସାହିତ୍ୟରେ ଗଣତନ୍ତ୍ର ଓ ସମାଜବାଦର ଉଦୟ ଘଟିଲା ସ୍ୱାଧୀନତା ପ୍ରାପ୍ତି ପରେ । ଏହା ପୂର୍ବ ପର୍ଯ୍ୟନ୍ତ ଚଳୁଥିଲା - ସତ୍ୟବାଦୀ, ସବୁଜ, ମାର୍କସବାଦ ଯୁଗ ସାହିତ୍ୟ ଇତିହାସରେ । ଏସବୁ ଯୁଗରେ ଫକୀରମୋହନ ଥିଲେ କେବଳ କାଁ ଭାଁ ଆଲୋଚନାରେ । ସେଭଳି ଆଲୋଚକ ଥିଲେ ଅବଶ୍ୟ ବେଶ୍ ବଳିଷ୍ଠ ଜନମତ ସୃଷ୍ଟିକାରୀ ନେତା, ଯଥା- ପଣ୍ଡିତ ନୀଳକଣ୍ଠଙ୍କ

ଭଳି ବ୍ୟକ୍ତିତ୍ୱ । ତଥାପି ସ୍ୱାଧୀନତା ହିଁ ଆଣିଦେଲା ଯୁଗସ୍ରଷ୍ଟାର ସ୍ୱୀକୃତି ସେନାପତିଙ୍କୁ । ତେବେ ଏତିକି ହାୱା ପରିବର୍ତ୍ତନ ଯଥେଷ୍ଟ ନଥିଲା ଲକ୍ଷ୍ମୀକାନ୍ତଙ୍କ ପାଇଁ । ତାଙ୍କୁ ସ୍ୱସ୍ଥାନରେ ପ୍ରତିଷ୍ଠା ପାଇଁ ଆବଶ୍ୟକ ଯୁଦ୍ଧୋତ୍ତର ଯୁଗର ନୂଆ ବିଚାରଧାରା । ଅର୍ଥାତ୍- ଏବର ଅସ୍ତିତ୍ୱବାଦ ମାନଦଣ୍ଡର ପ୍ରୟୋଗ । ଲକ୍ଷ୍ମୀକାନ୍ତ ଯଥାର୍ଥରେ ଜଣେ ଅସ୍ତିତ୍ୱବାଦୀ । ଏଠାରେ ତାହା ହିଁ ବିଚାର୍ଯ୍ୟ । ଫକୀରମୋହନଙ୍କ ସହିତ ଲକ୍ଷ୍ମୀକାନ୍ତଙ୍କ ତୁଳନା ଅନିବାର୍ଯ୍ୟ । ଉଭୟ ଥିଲେ ପଦ୍ୟ ଓ ଗଦ୍ୟ ଶୈଳୀର ଲେଖକ, କିନ୍ତୁ ଫକୀରମୋହନଙ୍କ ଗଦ୍ୟ ତାଙ୍କୁ ଦେଲା ଅଧିକ ମର୍ଯ୍ୟାଦା । ସେ ରାଧାନାଥଙ୍କ ତତ୍ସମ ଓ ତଦ୍ଭବ ଭାଷା ପରିବର୍ତ୍ତେ ଦେଶଜ ଏବଂ ବୈଦେଶିକ ଭାଷାକୁ ମୁକ୍ତ ଭାବେ ବ୍ୟବହାର କରୁଥିଲେ ।

ଏହା ତାଙ୍କର ସମସାମୟିକ ସାହିତ୍ୟିକମାନଙ୍କ ରୁଚିକୁ ନ ରୁଚିବା କଥା । ପୁଣି ଫକୀରମୋହନଙ୍କ ଚରିତ୍ରସବୁ- ସାରିଆ ଭଗିଆ, ରାଣ୍ଡିପୁଅ ଅନନ୍ତା ଇତ୍ୟାଦି ପ୍ରୋଲିଟାରିଏଟ୍ ଚରିତ୍ର ସାଙ୍ଗକୁ ନିମ୍ନବର୍ଗର ସାମନ୍ତ ଶ୍ରେଣୀ, ଯଥା- ରାମଚନ୍ଦ୍ର ମଙ୍ଗରାଜ, ଦିଲ୍‌ଦାର ମିଆଁ ପ୍ରଭୃତି । ଏମାନେ ରାଧାନାଥଙ୍କ ଯୁଗକୁ ଅନାଇଲେ ଆଦୌ ପାତ୍ରୋପଯୋଗୀ ନଥିଲେ । ଥିଲେ କିଏ ? ଉଷା, ପାର୍ବତୀ, ନନ୍ଦିକେଶରୀ, ଯଯାତି କେଶରୀ ବା କାବ୍ୟନାୟିକା- ଚିଲିକା, ଚନ୍ଦ୍ରଭାଗା, କେଦାର-ଗୌରୀର ଗୌରୀ ସମେତ ମାଳ ମାଳ ଉଚ୍ଚବଂଶଜ ସୁନ୍ଦରୀ ଯେଉଁମାନଙ୍କୁ ଏବେ ରୂପେଲି ପରଦାରେ ଦେଖିବାକୁ ପ୍ରୋଲିଟାରିଏଟ୍ ଦର୍ଶକ ପାଗଳ, କିନ୍ତୁ ସାହିତ୍ୟରେ ନାୟକନାୟିକାଙ୍କୁ ଇତିହାସ ବାଛିଲା ଅନ୍ୟ ପ୍ରକାରେ । ସେମାନେ ହେଲେ ଫକୀରମୋହନୀୟ-ଏଲିଟସ୍‌ମାନେ ଏମାନଙ୍କୁ ପ୍ରଥମ ସ୍ଥାନ ଦେଲେ - ଗଣତନ୍ତ୍ର ଓ ସମାଜବାଦ ପ୍ରତି କାଳୋଚିତ ଅନୁରକ୍ତି ହେତୁ । ତେଣୁ ପ୍ରଚଳନ ଆରମ୍ଭ ହେଲା ଫକୀରମୋହନଙ୍କ ଯୁଗର । ରାଧାନାଥଙ୍କ ଯୁଗ ପଡ଼ିଗଲା ପଛରେ । ଇତିହାସ ଗୋଟିଏ ହାତୀ ଯେ ଶୁଣ୍ଢରେ ସୁନା କଳସ ଧରି ଯୁଗପୁରୁଷ ବରଣ କରିବାକୁ ଆସେ । ଏ ହାତୀ ଯୁଗସ୍ରଷ୍ଟାଙ୍କ ମୁଣ୍ଡରେ ଅଭିଷେକ ଜଳ ଢାଳେ, ତାଙ୍କୁ ପିଠିରେ ବସାଏ, କିନ୍ତୁ କଥା ସେତିକିରେ ସରେନା । ହାତୀର ପରବର୍ତ୍ତୀ କାମଟି ହେଲା ଦଳାଚକଟା । ସେତେବେଳେ ଯେ ପଡ଼ିଲା ହାବୁଡ଼ରେ ସେ ମଲା ହାତୀ ଗୋଡ଼ ତଳେ । ଇତିହାସର ଏହି ନିୟମ ଯୋଗୁଁ ଫକୀରମୋହନ ହାତୀ ଚଢ଼ିଲେ ଆଉ ଲକ୍ଷ୍ମୀକାନ୍ତ ହେଲେ ଛାୟାମୂର୍ତ୍ତି । ତାଙ୍କର ବଳିଷ୍ଠ ଗଦ୍ୟ ଏବଂ ସର୍ବାଧୁନିକ ଅସ୍ତିତ୍ୱବାଦୀ ଅଭିଜ୍ଞତାଲବ୍ଧ ଅଭିବ୍ୟକ୍ତିକୁ ଉପଯୁକ୍ତ ମୂଲ୍ୟ ଦେବାକୁ ସମାଲୋଚକୀୟ ପ୍ରସ୍ତୁତି ନଥିଲା ସେତେବେଳେ । ତେଣୁ ଲକ୍ଷ୍ମୀକାନ୍ତଙ୍କ କାନ୍ତକବି ଉପାଧି କାଏମ ରହିଲା । ତାଙ୍କୁ ଯୁଗସ୍ରଷ୍ଟାର ସମ୍ମାନ ଦେବାକୁ ଓଡ଼ିଆ ସାହିତ୍ୟର ଐତିହାସିକମାନେ ଭୁଲିଯିବା ସ୍ୱାଭାବିକ । ଅନେକ ବର୍ଷ ବିତିଗଲାଣି ଏ ମଧ୍ୟରେ ସ୍ୱାଧୀନତା ପରଠାରୁ, କିନ୍ତୁ ମନେ ହେଉଛି ବର୍ତ୍ତମାନ ଇତିହାସର ପୃଷ୍ଠା ଓଲଟିବା ସମୟ ହୁଏତ ଆସିଛି । ଏବେ ଦେଖାଯାଉ ଇତିହାସର ପୁନର୍ମୂଲ୍ୟାୟନର ପ୍ରାୟ ଦ୍ୱାରା ସେ ସମୟର ଜଣେ ତଥାକଥିତ ଗୀତିକାର କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସ୍ୱରୂପ ସମାଲୋଚକର ଦର୍ପଣରେ କେଉଁ ରୂପରେ ପ୍ରତିଫଳିତ ହେଉଛି ।

ଲକ୍ଷ୍ମୀକାନ୍ତଙ୍କ ସମୟ ଥିଲା - ଊନବିଂଶ ଶତାବ୍ଦୀର ଶେଷାଂଶ (ଜନ୍ମ: ୧୮୮୮)ରୁ ଆରମ୍ଭ କରି ଭାରତବର୍ଷରୁ ଉପନିବେଶବାଦୀ ବ୍ରିଟିଶ ଶାସନର ଅନ୍ତକାଳର କିୟତ୍ ସମୟ ଆଗ ପର୍ଯ୍ୟନ୍ତ (ମୃତ୍ୟୁ : ୧୯୫୩) ଏହି ସମୟ ଅବଧିରେ ଜନ୍ମିଥିବା ଏବଂ ଆତ୍ମନିଷ୍ଠ ସକ୍ରିୟ ଜୀବନଯାପନ କରିଥିବା ମୁଷ୍ଟିମେୟ ଭାରତୀୟଙ୍କ ପାଇଁ ସେ ସମୟର ଐତିହାସିକ ତାତ୍ପର୍ଯ୍ୟ ଅବର୍ଣ୍ଣନୀୟ । ତାହା ଥିଲା ଯୁଗସନ୍ଧି ।

ଲକ୍ଷ୍ମୀକାନ୍ତଙ୍କ ଜନ୍ମର ତିନିବର୍ଷ ପୂର୍ବରୁ ୨୮ ଡିସେମ୍ବର ୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଅନୁଷ୍ଠାନର ପ୍ରାଣ ପ୍ରତିଷ୍ଠା ହୋଇସାରିଥାଏ । ଜଣେ ଇଂରେଜୀ ନାଗରିକ ଆଲାନ ଅକ୍ଟାଭିଓ ହ୍ୟୁମ୍ ସେ ଅନୁଷ୍ଠାନର ସମ୍ପାଦକ ହୋଇଥିଲେ ବି ସେ ଅନୁଷ୍ଠାନ ଏକ ଗଙ୍ଗାନଦୀ ପରି ବିଶାଳ ମହାସ୍ରୋତରେ ପରିଣତ ହେବାକୁ ଯାଉଥାଏ । ସେ ସ୍ରୋତରେ ଅବଗାହନ ପାଇଁ ମହାମହା ଭାରତୀୟ ରାଜନୈତିକ ଋଷିଗଣ ନିଜକୁ ପ୍ରସ୍ତୁତ କରିଚାଲିଥାନ୍ତି । ଠିକ୍ ସେହି ୧୮୮୮ରେ ମୋହନ ଦାସ କରମଚାନ୍ଦ ଗାନ୍ଧୀ ନାମଧାରୀ ଜଣେ ଗୁଜରାଟୀ ବୈଷ୍ଣବ ପରିବାରର ସନ୍ତାନ ଦୁଃସାହସିକତା ପ୍ରଦର୍ଶନ ପୂର୍ବକ ଦରିଆପାରିକୁ ଚାଲିଯାଇଥାନ୍ତି ଓ ଲଣ୍ଡନର ସମ୍ମାନଜନକ ଆଇନ ବିଦ୍ୟାଳୟ ଇନ୍ନର ଟେମ୍ପଲରେ ପ୍ରବେଶ କରିଥାନ୍ତି । ଏଣେ ଭାରତରେ ପ୍ରସ୍ତୁତି ପର୍ବ ଆରମ୍ଭ ରାଜନୈତିକ, ସାଂସ୍କୃତିକ ନବଜାଗରଣର । ସ୍ୱାମୀଜୀ ପ୍ରସ୍ତୁତ ହେଉଥାନ୍ତି ଆମେରିକାର ଚିକାଗୋ ୱାର୍ଲଡ଼ ପାର୍ଲାମେଣ୍ଟ ଧର୍ମସଭା ପାଇଁ (୧୮୯୩) । ତାଙ୍କ ସହିତ ତାଳମେଳ ଦେଇ ମୁଣ୍ଡ ଟେକୁଥାନ୍ତି କେତେକ ଦୂରଦୃଷ୍ଟିସମ୍ପନ୍ନ ପରିବାରର ସନ୍ତାନ- ପଡ଼ୋଶୀ ବଙ୍ଗଦେଶର ଠାକୁର ପରିବାର, ରାଜା ରାମମୋହନ, ସଦ୍ୟ ଇଂଲଣ୍ଡ-ଫେରନ୍ତା ବିପ୍ଳବୀ ଅରବିନ୍ଦ, ତେଣେ ପଶ୍ଚିମର ବମ୍ବେ ପ୍ରେସିଡେନ୍ସିରୁ ଦାଦାଭାଇ ନାରୋଜୀ, ତିଳକ, ଗୋଖଲେ ଇତ୍ୟାଦି ମହାମହା ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିବିଶେଷ । ଏହି ଜାଗରଣ ପର୍ବରେ ଓଡ଼ିଶା ବିଶେଷ ପଛରେ ପଡ଼ିନଥାଏ । ମଧୁସୂଦନ ଦାସ

ଆରମ୍ଭ କଲେଣି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଅଭିଯାନ । ଫକୀରମୋହନ ଓଡ଼ିଆ ଭାଷା ସୁରକ୍ଷା ପାଇଁ ମୁଣ୍ଡ ପିଟି ରାତାରାତି ପାଠ୍ୟପୁସ୍ତକ ଲେଖାରେ ବସିଲେଣି । ଗୋପବନ୍ଧୁ ପ୍ରସ୍ତୁତ ହେଉଥାନ୍ତି ଆଗାମୀ ଦଶନ୍ଧିରେ କଂଗ୍ରେସର ବିପୁଳ କାର୍ଯ୍ୟକ୍ରମ ପାଇଁ ।

ଏହି କାଳ ସନ୍ଧିରେ ଭଦ୍ରକର ଏକ ଜମିଦାର ପରିବାରରେ ଜନ୍ମିଲେ ଲକ୍ଷ୍ମୀକାନ୍ତ । ତାଙ୍କ ପିତା-ତାଳପଦାର ଜମିଦାର ଚଉଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ରଙ୍କ ଏହି ପଦବୀ ମଣ୍ଡିତ ଶୁଭନାମଟି ହିଁ କାନ୍ତକବିଙ୍କ ପରମ୍ପରାସିଦ୍ଧ ବୁନିଆଦିର ଯଥେଷ୍ଟ ବଡ଼ ପରିଚୟ । ତାଙ୍କ ମାତା ରାଧାମଣି ବି କିଛି କମ୍ ବୁନିଆଦିବାଲା ଘରର କନ୍ୟା ନୁହଁନ୍ତି । ତାଙ୍କ ବାପା ଦୁର୍ଯ୍ୟୋଧନ ଦାସ ବୈତରଣୀ କୂଳ କଣ୍ଡାପାରିର ଜମିଦାର ଏବଂ ସେ କାଳର ବଡ଼ ଅମଲା ଅର୍ଥାତ୍ ସରକାରୀ କଳର ପ୍ରଭାବଶାଳୀ ବ୍ୟକ୍ତି ।

ବାପ-ଅଜା ବଂଶର ଏହି ସମ୍ଭ୍ରାନ୍ତତାକୁ ଉତ୍ତରାଧିକାର ସୂତ୍ରରେ ପାଇଥିଲେ ଲକ୍ଷ୍ମୀକାନ୍ତ, ତାହା ତାଙ୍କୁ ବାଲ୍ୟ, କୈଶୋର ଏବଂ ଯୌବନରେ କିପରି ପ୍ରଭାବିତ କରିଥିବ ତାହା ଅନୁମେୟ । ସାଧାରଣତଃ ସାମନ୍ତବାଦୀ ପରିବାରର ସନ୍ତାନମାନେ ଯୌବନରେ ଧନସମ୍ପତ୍ତି ଓ ପ୍ରଭୁତ୍ୱର ଅଧିକାରୀ ହେଲେ ଅବିବେକୀ ପାଲଟି ଯାଆନ୍ତି, କିନ୍ତୁ ଲକ୍ଷ୍ମୀକାନ୍ତଙ୍କ ଚରିତ୍ର ଗଢ଼ା ହୋଇଥିଲା ଭିନ୍ନ ଉପାଦାନରେ । ସେ ତାଙ୍କ ଯୁଗର ଲକ୍ଷଣ ଘେନି ଜନ୍ମିଥିଲେ । ତାହା ଥିଲା ସନ୍ନ୍ୟାସୀ-ରାଜାର ଲକ୍ଷଣ । ଏହା ନିଶ୍ଚିତ ଯେ ଭାରତର କଂଗ୍ରେସ ଆନ୍ଦୋଳନ କେବଳ ଏକ ପ୍ରୋଲିଟାରିଏଟ ବିପ୍ଳବ ନଥିଲା, ଏଥିରେ ରାଜା ଜମିଦାର ଧନୀ ଦରିଦ୍ର ସମସ୍ତେ ଅଂଶ ନେଇଥିଲେ । ରୁଷିଆର କମ୍ୟୁନିଷ୍ଟ ବିପ୍ଳବ ପୂର୍ବରୁ ସେ ଦେଶର ଜଣେ ସମ୍ଭ୍ରାନ୍ତ ଜମିଦାର କାଉଣ୍ଟ ଟଲଷ୍ଟୟ ଯେଉଁ ରାଜର୍ଷି ଲକ୍ଷଣ ପ୍ରଦର୍ଶନ କରିଥିଲେ ତାହା ହିଁ ସନ୍ନ୍ୟାସୀ-ରାଜାର ଲକ୍ଷଣ । ଭାରତର ଏହି ଲକ୍ଷଣଯୁକ୍ତ ବହୁ ବହୁ ରାଜର୍ଷିଙ୍କ ଉଦାହରଣ ଇତିହାସରୁ ମିଳେ । ସମୟକ୍ରମେ ଲକ୍ଷ୍ମୀକାନ୍ତ ନିଜେ ଏବଂ ତାଙ୍କ ପଛେ ପଛେ ତାଙ୍କର ସାରା ପରିବାର କଂଗ୍ରେସୀ ବିପ୍ଳବାଗ୍ନିରେ ଝାସ ଦେଇଥିଲେ - ଏହା ସମର୍ଥିତ ଇତିହାସ ।

ଏହିପରି ଜଣେ ରାଜକଳାଯୁକ୍ତ ସୁନ୍ଦର ସୁପୁରୁଷ କୌଣସି ରାଜକନ୍ୟାର ପ୍ରେମପ୍ରାର୍ଥୀ ହେବା ଏବଂ ସେଥିରେ ବିଫଳ ହେଲେ କି ପ୍ରକାର ପରିସ୍ଥିତି ଉପୁଜିବା ସମ୍ଭବ ତାହାର ସୂଚନା ମିଳେ ଲକ୍ଷ୍ମୀକାନ୍ତଙ୍କ ଜୀବନୀରୁ । ବାଲେଶ୍ୱରର ଅନ୍ୟତମ ଜମିଦାରଙ୍କ କନ୍ୟା ଲବଙ୍ଗଲତାଙ୍କ ପ୍ରତି ଶୈଶବାବସ୍ଥାରୁ ଆକୃଷ୍ଟ ହୋଇପଡ଼ିଥିଲେ ଲକ୍ଷ୍ମୀକାନ୍ତ, କିନ୍ତୁ କଲେଜ ପାଠପଢ଼ା ଶେଷ ନହେବା ପର୍ଯ୍ୟନ୍ତ ତାହା ଅସମ୍ଭବ ବୋଲି ପ୍ରତିବନ୍ଧକ ହେଲେ ବାପା ଭାଗବତ । ଲକ୍ଷ୍ମୀକାନ୍ତ ଉନ୍ମାଦଗ୍ରସ୍ତ ହେବାପରି ହେଲେ ଅନ୍ୟମନସ୍କ । ଖାତା ବହି କାନ୍ଥବାଡ଼ ଚତୁର୍ଦ୍ଦିଗ ଲେଖି ଚାଲିଲେ - ଏକମାତ୍ର ନାଁ ଲବଙ୍ଗଲତା । ଏ ଥିଲା ପ୍ରସ୍ତୁତି ପର୍ବ ସନ୍ନ୍ୟାସୀ-ରାଜାର ଭାଗ୍ୟ ଏବଂ ବିଧାତାଙ୍କ ସହିତ ମୁକାବିଲାର । ଏହି ସମୟରେ ହିଁ ଲକ୍ଷ୍ମୀକାନ୍ତଙ୍କ କବି ପ୍ରତିଭାର ଶୀର୍ଷତା ଆରୋହଣ ପାଇଁ ଉଦ୍ୟତ ହେଲା । ଏହି ସମୟରେ ମଧ ସେ ଆଶୀର୍ବାଦ ଲାଭ କଲେ ଫକୀରମୋହନଙ୍କର । ତାଙ୍କରି ମଧ୍ୟସ୍ଥତା ଫଳରେ ଲକ୍ଷ୍ମୀକାନ୍ତ ବିବାହ କଲେ ଲବଙ୍ଗଲତାକୁ, କିନ୍ତୁ ହାୟ ! ବିଧିର ବିଧାନ ଥିଲା ଭିନ୍ନ ।

ଟ୍ରାଜେଡ଼ି ହିଁ ସାଧାରଣକୁ କରେ ଅସାଧାରଣ । ରାମଚନ୍ଦ୍ର ବନବାସ ଦଣ୍ଡରେ ଦଣ୍ଡିତ ନହୋଇଥିଲେ ଅବତାର ବୋଲି ଗଣାଯାଇନଥାନ୍ତେ । ଯୁଧିଷ୍ଠିର ଧର୍ମରାଜ ହୋଇପାରିନଥାନ୍ତେ ବନବାସ ନ କରିଥିଲେ । ଯାହା ପୁରାଣରେ ସତ୍ୟ ତାହା କାଳେ କାଳେ ସତ୍ୟ । ଲକ୍ଷ୍ମୀକାନ୍ତଙ୍କ ପରି ଗନ୍ଧର୍ବ କୁମାରଙ୍କ ଭାଗ୍ୟରେ ଲେଖାଥିଲା ପୁଣି କୁଷ୍ଠବ୍ୟାଧି ! ଏ ଟ୍ରାଜେଡ଼ି କେତେଜଣ କବିଙ୍କ ଜୀବନୀରେ ଦେଖିବାକୁ ମିଳେ ? ଏହା ହିଁ ଲକ୍ଷ୍ମୀକାନ୍ତଙ୍କ ଜୀବନୀ ପ୍ରତି ଲକ୍ଷ୍ୟ ରଖିଥିବା ଆଧୁନିକ ସାହିତ୍ୟ ସମାଲୋଚକ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟବସ୍ତୁ । ଅଧିକାଂଶ ସମାଲୋଚକ ବ୍ୟକ୍ତିର ବାହ୍ୟ ସାମାଜିକ ବ୍ୟବହାରରୁ ତା'ର ସାହିତ୍ୟିକ ମୂଲ୍ୟ ବିଚାର କରିଥାନ୍ତି । ଏ ପ୍ରକାର ବିଚାରାଧାରା ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବର ପ୍ରଚଳିତ ପାରମ୍ପରିକତାର ଅନୁଗାମୀ ଯାହା ଯୁଦ୍ଧୋତ୍ତର ଆଧୁନିକ ସାହିତ୍ୟ ବିଚାର ପାଇଁ ଅଚଳ । ଏଥିରେ ବ୍ୟକ୍ତିର ଆତ୍ମିକ ଉପଲବ୍ଧି ପାଇଁ ସ୍ଥାନ ନଥାଏ । ତେଣୁ ଏ ମାନଦଣ୍ଡରେ ବ୍ୟକ୍ତିର ସ୍ଥାନ ଗୌଣ । ବ୍ୟକ୍ତିର ସୁଖଦୁଃଖରେ କାହାର କିଛି ଯାଏ ଆସେନା । କେବଳ ସମାଜ ପାଇଁ ବ୍ୟକ୍ତି ଆବଶ୍ୟକ । ଏ ହେଲା ପୁରୁଣା ସାମାଜିକ-ବାସ୍ତବାଦୀ ସାହିତ୍ୟ ବିଚାର । ଏହି ବିଚାରରେ ଲକ୍ଷ୍ମୀକାନ୍ତ ନିଶ୍ଚିତ ଭାବେ ଜଣେ କବି କେବଳ, ଯାହାଙ୍କ ଗୀତି କବିତା କାନ୍ତ କୋମଳ, ମନୋରଞ୍ଜକ, ହାସ୍ୟ-ରସାତ୍ମକ, ସରସ, ସୁନ୍ଦର ଇତ୍ୟାଦି-ଖାଲି ମନରଖା ଥାଥାମାମା କଥା କେଇପଦ । ଏଥିରେ ଜୀବନର ଗଭୀର ଉପଲବ୍ଧିର ସ୍ଥାନ କେଉଁଠି ?

ଯୁଦ୍ଧୋତ୍ତର ସାହିତ୍ୟ ବିଚାରରେ ମଣିଷର ମୌଳିକତା ଖୋଜାଯାଏ ତା'ର ଐକାନ୍ତିକ ସ୍ଥିତିଜନିତ ଅଭିବ୍ୟକ୍ତିରୁ । ମୁଁ କିଏ ? - ଏ ପ୍ରଶ୍ନର ଉତ୍ତର ବ୍ୟକ୍ତି ନିଜେ ଖୋଜେ । ଯେଉଁ ମୁହୂର୍ତ୍ତରେ ଏଇ ଖୋଜିବା ପ୍ରକ୍ରିୟା ଆରମ୍ଭ ହୁଏ ସେଇ ମୁହୂର୍ତ୍ତରୁ ବ୍ୟକ୍ତିର

ସମସ୍ୟା ସୃଷ୍ଟି ହୋଇଯାଏ । ତାକୁ ସବୁ କଥା ଅରୁଚିକର ମନେହୁଏ । ଏଇଠୁ ଆରମ୍ଭ ବୈରାଗ୍ୟ । ପାଶ୍ଚାତ୍ୟ ସାହିତ୍ୟରେ ଏହାକୁ କୁହାଯାଏ - ଏଲିଏନେସନ୍ । ଏଲିଏନେସନ୍‌ର ପ୍ରଥମ ଲକ୍ଷଣ ଅରୁଚି ବା ବୋରଡମ୍ । ଏ ଏକ ଆଧୁନିକ କାଳର ରୋଗ ନୁହେଁ, ମଣିଷର ଆତ୍ମାର ରୋଗ, କିନ୍ତୁ ପାଶ୍ଚାତ୍ୟ ସାହିତ୍ୟ ସମାଲୋଚକଙ୍କ ପାଇଁ ଏହା ଆଧୁନିକ ଯୁଦ୍ଧୋତ୍ତର ଯୁଗର ମଣିଷର ଅସାମାଜିକତାର ଲକ୍ଷଣ ବହନକାରୀ ଏକ ମାନସିକ ବ୍ୟାଧି । ଏହାକୁ ସେମାନେ କହନ୍ତି-ଅସ୍ତିତ୍ୱବାଦ । ସେମାନଙ୍କ ପାଇଁ ଏହା ଏକ ଦାର୍ଶନିକ ସମସ୍ୟା, କିନ୍ତୁ ଭାରତ ପାଇଁ ଏହା ହେଲା ଆଧାତ୍ମିକ ସମସ୍ୟା । ଜୀବନରେ ବୈରାଗ୍ୟ ବା ବିଷାଦ ଭୋଗିନଥିବା ବ୍ୟକ୍ତି ବ୍ୟକ୍ତିତ୍ୱ-ବିହୀନ । ବୈରାଗ୍ୟରୁ ମୁକ୍ତି ଖୋଜିବା ବ୍ୟକ୍ତି ସନ୍ୟାସୀ ହୁଏ । ସନ୍ୟାସରୁ ତପସ୍ୟା । ତପସ୍ୟାରୁ ସିଦ୍ଧି । ସିଦ୍ଧିରୁ ମୁକ୍ତି । ଏହି ପନ୍ଥା ବ୍ୟକ୍ତିକୁ ଜଣାଥାଏ ଭାରତରେ । ଜଣାନଥିଲେ ସେ ନିଜେ ଜାଣିବାର ପନ୍ଥା ଆବିଷ୍କାର କରିବାକୁ ଉଦ୍ୟତ ହୁଏ । ଅନେକ ସମୟରେ ଏ ଉଦ୍ୟମ ସଫଳ ହୁଏନା । କାରଣ ବ୍ୟକ୍ତିର ସବୁ ସମସ୍ୟା ସମାଧାନର ଚାବିକାଠି କାହାରି ହାତରେ ନଥାଏ । କୋଉ ଶାସ୍ତ୍ର ବା ଗୁରୁ ଏ ଦିଗରେ ବ୍ୟକ୍ତିର କୌଣସି ସାହାଯ୍ୟରେ ଆସନ୍ତି ନାହିଁ । ସେଥିଯୋଗୁଁ ଯୁଗେଯୁଗେ ବୈରାଗ୍ୟ ପ୍ରପୀଡ଼ିତ ରାଜକୁମାରମାନେ-ସେ ଗୌତମ ହୁଅନ୍ତୁ ବା ମହାବୀର ହୁଅନ୍ତୁ-ଏମାନେ ପ୍ରଥମେ ବୈରାଗୀ, ପରେ ସନ୍ୟାସୀ, ତା'ପରେ ତପସ୍ୱୀ ହେଉଥିଲେ ଜୀବନର ଯଥାର୍ଥ ବାସ୍ତବତାର ପ୍ରତ୍ୟକ୍ଷ ଉପଲବ୍ଧି ପାଇଁ । ଯେଉଁମାନେ ମୂଳରୁ ବୈରାଗ୍ୟ ଅନୁଭବ ନକରିଥାନ୍ତି ସେମାନଙ୍କ ପାଇଁ ବିଧାତା ନିଜେ ବାଟ ଦେଖାଏ-କୌଣସି ନା କୌଣସି ଆଳରେ । ରାମଚନ୍ଦ୍ରଙ୍କୁ ବନବାସ, ଯୁଧିଷ୍ଠିରଙ୍କ ପାଇଁ କପଟପାଶା ନ୍ୟାୟରେ ଲକ୍ଷ୍ମୀକାନ୍ତଙ୍କୁ ମିଳେ-କୁଷ୍ଠବ୍ୟାଧି । ଲବଙ୍ଗଲତାଙ୍କୁ ବିବାହର ବର୍ଷ କେତେଟା ନଯାଉଣୁ ସେ ବି.ଏ. ପାସ୍ କରି ଆଇନ ପଢ଼ିବାକୁ ପ୍ରସ୍ତୁତ ହେଉଥାନ୍ତି । ଦୁଇ ଶିଶୁପୁତ୍ର ନିତ୍ୟାନନ୍ଦ ଓ ଗୌରଚନ୍ଦ୍ର କୋଳର ସନ୍ତାନ ମାତ୍ର । ଏତିକିବେଳେ ଦେଖାଗଲା ରୋଗର ଲକ୍ଷଣ । ଲକ୍ଷ୍ମୀକାନ୍ତ ହେଲେ ନିର୍ବାସିତ-ପରିବାରରୁ ଏବଂ ସମାଜରୁ । ଏହା ପରେ ?

ଲକ୍ଷ୍ମୀକାନ୍ତଙ୍କ ସମାଲୋଚକମାନେ ତାଙ୍କ ଜୀବନର ଏହି ମର୍ମନ୍ତୁଦ ଘାଟି ଉପରେ ଠିଆହୋଇ ତାଙ୍କ ଆତ୍ମାର ଗତିପଥକୁ ଲକ୍ଷ୍ୟ କରି ତାଙ୍କର ଦୀର୍ଘ କର୍ମମୟ ଜୀବନର ପ୍ରତିବଦ୍ଧତାକୁ ନିରୀକ୍ଷଣ କରିଛନ୍ତି କି ? ଯଦି ନକରିଥାନ୍ତି ତେବେ କୁଷ୍ଠବ୍ୟାଧିମୁକ୍ତ ଲକ୍ଷ୍ମୀକାନ୍ତଙ୍କ ମନୋବଳକୁ ଲକ୍ଷ୍ୟ କରନ୍ତୁ । ଏହି ମନୋବଳ ଏବଂ ଦୃଢ଼ତା ତାଙ୍କ କବିତାରେ ଦୃଶ୍ୟ ହୁଏନା । ତାହା ସ୍ପଷ୍ଟତଃ ତାଙ୍କ ଉପନ୍ୟାସ, ଗଳ୍ପ ଓ ନାଟକରୁ ମିଳେ । ଉଦାହରଣ-ଉଦ୍ଧୃତ ପରିଚ୍ଛେଦଟିର ଭାଷା ଓ ଶୈଳୀକୁ ଉପଭୋଗ କରନ୍ତୁ, 'ମୁଁ ଥିଲି ତମ ଭଳିଆ ଖାଲି ମଣିଷ, କର୍ମଗୁଣରେ ହୋଇପଡ଼ିଲି ନନ୍‌କୋଅପରେଟ୍ । ଯେପରି ଗୋଟିପୋକ ଦେହରେ ଡେଣା ବାହାରିଲେ ସେ ପ୍ରଜାପତି ହୋଇଥାଏ, ସେହିପରି ମୁଁ ଖଦଡ଼ ପକ୍ଷ ଲଗାଇ ପୂରା ଦସ୍ତୁର ଭଲିଣ୍ଟିଅର ହୋଇଗଲି । ଅସହଣି ଲୋକେ ଟାପରା କରିବେ 'ପିମ୍ପୁଡ଼ି ଦେହରେ ଡେଣା ହେଲା' ବୋଲି, କିନ୍ତୁ ଆମର ଡେଣା ହେବାଟା ଇଭଲ୍ୟୁସନ୍ ନୁହେଁ-ରିଭଲ୍ୟୁସନ୍ । ଠିକ୍ କରି କହିବାକୁ ଗଲେ ମେଟାମର୍ଫୋସିସ୍ । ଏ ମେଟାମର୍ଫୋସିସଟା କିପରି ହେଲା ଜାଣନ୍ତି ? 'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ' ।'

ଏ ଭାଷା କିଛିଟା ଫକୀରମୋହନୀୟ ଭଳି ମନେ ହେଉଛି । କାରଣ ଦେଶଜ ଓ ବୈଦେଶିକ ଭାଷା ମିଶ୍ରରୁ ଏଭଳି କଉତୁକିଆ ପ୍ରଭାବ ସୃଷ୍ଟିର କଳା ପ୍ରଥମେ ଚଳେଇଲେ ଫକୀରମୋହନ ତାଙ୍କ ସୃଜନଶୀଳ ସାହିତ୍ୟରେ, କିନ୍ତୁ ଫକୀରମୋହନଙ୍କ ସାହିତ୍ୟ ଭାବନା ଅର୍ଥାତ୍ ଆଇଡ଼ିଆ ପ୍ରଧାନ ନୁହେଁ, ତେଣୁ ସୃଜନ କଳା ପାଇଁ ତାହା ଆଦର୍ଶସ୍ଥାନୀୟ ନୁହେଁ । ସେ ଅତୀତକୁ ଚାହିଁ ଚରିତ୍ର ଓ ପରିସ୍ଥିତି ସୃଷ୍ଟି କରିଥିଲେ । ରାମଚନ୍ଦ୍ର ମଙ୍ଗରାଜଙ୍କ ଯୁଗ ସେତେବେଳକୁ ରହିଲାଣି ଢେର୍ ପଛରେ । ୧୮୮୫ର କଂଗ୍ରେସ ୧୯୧୮ (ଫକୀରମୋହନଙ୍କ ଦେହାନ୍ତ) ସୁଦ୍ଧା ଶକ୍ତିଶାଳୀ ହୋଇ ସାରିଥାଏ, କିନ୍ତୁ କଂଗ୍ରେସୀ ଆନ୍ଦୋଳନ ପ୍ରସଙ୍ଗ ଫକୀରମୋହନଙ୍କୁ ପ୍ରଚୋଦିତ କରୁନଥାଏ - ଗଳ୍ପ ଉପନ୍ୟାସ ରଚନା ଦିଗରେ । ମାତ୍ର ଲକ୍ଷ୍ମୀକାନ୍ତଙ୍କ ପାଇଁ କେବଳ ବର୍ତ୍ତମାନ ନୁହେଁ, କଂଗ୍ରେସର ଭବିଷ୍ୟତ ମଧ୍ୟ ଚିନ୍ତାର କାରଣ ହୋଇଥାଏ । ତେଣୁ ସେ ଲେଖିଲେ 'ଅସହଯୋଗୀର ଆତ୍ମକଥା' (ଉଦ୍ଧୃତାଂଶ ଦ୍ରଷ୍ଟବ୍ୟ) । ଏଥିରେ ସେ ନିଜକୁ ନାୟକ ସ୍ଥାନରେ ରଖି ନିଜ ଦର୍ପଣରେ ନିଜ ମୁଖାବଲୋକନ କରିଛନ୍ତି । ସେ ନିଜେ ଜଣେ ଜମିଦାର । ମନେହେବ ସତେବା ସେ ଜମିଦାର ହୋଇଥିବାରୁ ଗାନ୍ଧୀ ଓ ସତ୍ୟାଗ୍ରହର ବିରୋଧ କରୁଛନ୍ତି, କିନ୍ତୁ ଉକ୍ତ ଉପନ୍ୟାସରେ ସେ ପୂର୍ଣ୍ଣମାତ୍ରାରେ ଗାନ୍ଧୀଙ୍କ ସମର୍ଥକର ପ୍ରମାଣ ଦେଇଛନ୍ତି । ପୁଣି ସେତେବେଳର ରାଜା ଜମିଦାରଙ୍କୁ ସେ କେଉଁ ଦୃଷ୍ଟିରେ ଦେଖୁଥିଲେ ତା'ର ଜ୍ୱଳନ୍ତ ପ୍ରମାଣ ରଖିଯାଇଛନ୍ତି ତାଙ୍କ ନାଟକ 'ପଞ୍ଚାମୃତ'ରେ । ସେଥିରେ ସେ କନିକା ରାଜାଙ୍କ ସମେତ ନିଜ ପରିବାର, ଭାଇ ବନ୍ଧୁ କୁଟୁମ୍ବରେ ଯେତେ ଜମିଦାର ଥିଲେ କାହାରିକୁ ଟାହିଟାପରା ନିନ୍ଦା ସମାଲୋଚନା କରିବାକୁ ଭୟ କରି ନାହାନ୍ତି । ଏପରିକି ସେ ସମୟର ବ୍ରିଟିଶ ଶାସନତନ୍ତ୍ରର ବଡ଼

ହାକିମମାନଙ୍କୁ ବି ତିକ୍ତ ସମାଲୋଚନାରୁ ବାଦ୍ ଦେଇନାହାନ୍ତି । କଂଗ୍ରେସ ସେତେବେଳର ଉଦୟଭାନୁ । ଇତିହାସର ଗତିପ୍ରତି ସଚେତନ ଅଧିକାଂଶ ବୁଦ୍ଧିଜୀବୀଙ୍କୁ ଖଦଡ଼ର ମାହାତ୍ମ୍ୟ ବେଶ୍ ଜଣାଥିଲା ସେ କାଳରେ । ପୁଣି ନିଜେ ଲକ୍ଷ୍ମୀକାନ୍ତ ସପରିବାର କଂଗ୍ରେସ ଆନ୍ଦୋଳନରେ ଝାସ ଦେଇଥିଲେ ୧୯୩୦ ଲବଣ ସତ୍ୟାଗ୍ରହରେ । ତାଙ୍କ ଦୁଇ ପୁଅ ନିତ୍ୟାନନ୍ଦ, ଗୌରଚନ୍ଦ୍ର କାରାବରଣ କରିଥିଲେ ସେଇ ସତ୍ୟାଗ୍ରହରେ ଯୋଗଦେଇ । ଭଉଣୀ କୋକିଳା ହରିଜନ ସ୍କୁଲ ପ୍ରତିଷ୍ଠା କରିଥିଲେ ନିଜ ଗାଁରେ । ଜେଲ୍ ଯାଇଥିଲେ ଲବଣ ସତ୍ୟାଗ୍ରହରେ । ତେବେ 'ଅସହଯୋଗୀର ଆତ୍ମକଥା' ଉପନ୍ୟାସରେ ସେ କଂଗ୍ରେସିଆଙ୍କ ଉପରେ କ'ଣ ମିଛରେ ଖପ୍ପା ହେଉଥିଲେ ?

ବିଶ୍ୱରୁ ଉପନିବେଶବାଦ ଲୋପ ପାଇବା ସହିତ ସାମନ୍ତବାଦ ମଧ୍ୟ ଲୋପ ପାଇବ, ଏ ଚିନ୍ତା ବିବ୍ରତ କରୁନଥିଲା ତାଙ୍କୁ ସେତେ ବେଶୀ । ସେ ବିବ୍ରତ ହୋଇଥିଲେ କଂଗ୍ରେସିଆ ନାମକ ଏକ ନୂଆ ଶୋଷଣ ଗୋଷ୍ଠୀର ଆବିର୍ଭାବକୁ ଲକ୍ଷ୍ୟ କରି । ସେମାନଙ୍କ ହାତକୁ ଶାସନ ଡୋରି ଆସିବା ପରେ କି ଭୟଙ୍କର ପରିସ୍ଥିତି ଉପୁଜିବ-ଦୂରଦୃଷ୍ଟି ସହକାରେ ଲକ୍ଷ୍ମୀକାନ୍ତ ଦେଖୁଥିଲେ ଢେର୍ ଆଗର ସମୟକୁ । ତାଙ୍କ ଉପନ୍ୟାସରେ ଯାହା 'ପ୍ରେଡିକ୍ଟ' କରିଛନ୍ତି ସେ, ତାହା ବର୍ତ୍ତମାନ ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହେଉଛି । କ୍ଷମତା ହାସଲକୁ ରାଜନୀତିର ମୂଳ ଲକ୍ଷ୍ୟ ବୋଲି ମୂଳରୁ ବୁଝି ନେଇ ସାରିଥିବା ସ୍କୁଲ କଲେଜର ନିକୃଷ୍ଟତମ ଛାତ୍ରମାନଙ୍କ ପାଇଁ କଂଗ୍ରେସର ଅସହଯୋଗ ଆନ୍ଦୋଳନ ଯେ ଏକ ପ୍ରଶସ୍ତ ରାଜମାର୍ଗ ଏହି ତତ୍ତ୍ୱ ଅବତାରଣା କରିଛନ୍ତି ଔପନ୍ୟାସିକ ତାଙ୍କର ଏହି କ୍ଷୁଦ୍ର ସଶକ୍ତ ଉପନ୍ୟାସରେ । ଏହି ଦେଖନ୍ତୁ ନମୂନା-

'... ମୋର ଭାରି ଅହନ୍ତା ଥିଲା ଆମ ଆସିଷ୍ଟାଣ୍ଟ ହେଡ଼ମାଷ୍ଟର ଅନାଦିବାବୁ ଉପରେ । ସେ ମୋତେ ମୂଳରୁ ଦେଖିପାରେ ନାହିଁ । ମୁଁ ଯେପରି ତା'ର ଦି' ଆଖିରେ ବିଷ । ତା' ଠିଆ ଠିଆ କଳା ନିଶ ଆଉ ତା' ତଳେ ଅଧା ନାଲି ଧଳା ଫାଙ୍କ ଫାଙ୍କ ଦାନ୍ତ ପାଛିଆକ ଘେନି ଆମ ଭଳିଆ ନିରୀହ ପିଲାଙ୍କର ସେଇଟା ଥିଲା ଗୋଟାଏ ମୂର୍ତ୍ତିମାନ୍ ଯମ । ... ମୁଁ ମନେ ମନେ ଠିକ୍ କରି ନେଇଥାଏ କି ସରକାରଟା ଉଠିଗଲେ ସେ ଅନାଦିଆ ମାଷ୍ଟରକୁ... ଆଚ୍ଛାକରି ଶିଳେଇ ଦେବି ଦିନେ । ଦେଖି ନେବି, ମୋତେ ବାପୁଡ଼ା କିମିତି ରଷ୍ଟିକେଟ୍ କରିବାକୁ ବସିଥିଲା । ଗାନ୍ଧୀଙ୍କ ମୁହଁରେ ଫୁଲଚନ୍ଦନ ପଡ଼ୁ, ଏ କାମଟା କେମିତି ସଫଳ ହୋଇଯାଉ । ...ଏହିପରି ସାତପାଞ୍ଚ ଭାବିଚିନ୍ତି ଆମେ କେତେଜଣ ବିଚାରସାର ହୋଇ ଦିନେ ଯେତେବେଳେ ଅନାଦିବାବୁ କ୍ଲାସରେ ପଢ଼ାଉଥାଏ ସେତିକିବେଳେ ହଠାତ୍ 'ଜୟ ଗାନ୍ଧୀ ମହାରାଜ କି ଜୟ' ବୋଲି ବୋବାଳି ଉଠିଲୁ । ଅନାଦିର ତ ଅକଲ ଗୁଡୁମ୍... ।'

୧୯୨୧ର କଂଗ୍ରେସୀ ଅସହଯୋଗ ଆନ୍ଦୋଳନ ବେଳର ଏଭଳି ଯୁବ ମନସ୍ତତ୍ତ୍ୱ ଏକବିଂଶ ଶତାବ୍ଦୀରେ ଆହୁରି ଦୃଢ଼ତା ହାସଲ କରିସାରିଛି । ବର୍ତ୍ତମାନ ଏକାଡେମିକ ବାତାବରଣ ସମ୍ପୂର୍ଣ୍ଣ କଳୁଷିତ । ସେଠାରେ ମେଧାବୀ ଛାତ୍ରର ସ୍ଥାନ ସଭା ତଳେ । ସଭା ଉପରେ ଲକ୍ଷ୍ମୀକାନ୍ତଙ୍କ 'ମୁଁ'ମାନଙ୍କ ଆସ୍ଥାନ । ସେଇମାନେ ରାଜନୀତିରେ ସର୍ବୋଚ୍ଚ ଶିଖର ଆରୋହଣ ପାଇଁ ଅଭିଳାଷୀ । ଗଣତନ୍ତ୍ରର ବିପଦ କେଉଁଠି ଏକଥା ଆଦ୍ୟରୁ ସୂଚେଇ ଦେଇଥିଲେ ଲକ୍ଷ୍ମୀକାନ୍ତ, କଂଗ୍ରେସର ସାମାଜିକ ସକ୍ରିୟ ଆବିର୍ଭାବ ସମୟରୁ । ଏହା ତାଙ୍କର କାଳୋତ୍ତୀର୍ଣ୍ଣତାର ପ୍ରମାଣ । ତଥାପି ଏଭଳି ଜଣେ ଯୁଗପ୍ରବର୍ତ୍ତକ ଔପନ୍ୟାସିକଙ୍କୁ ସମାଲୋଚକୀୟ ଅବହେଳା ମିଳେ ସାହିତ୍ୟର ଇତିହାସ ଲେଖକଙ୍କ କଲମରୁ- 'ଦି ଅଦର ଲାଇଟସ୍' ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ?

ଲକ୍ଷ୍ମୀକାନ୍ତଙ୍କ ସମ୍ପର୍କରେ ସୁଦୀର୍ଘ ଗବେଷଣାମୂଳକ ପ୍ରବନ୍ଧ ପାଠ ଏଠାରେ ଅଭିପ୍ରେତ ନୁହେଁ । କେବଳ ଜଣେ ଅସମୟରେ ଜନ୍ମିତ ଅଗ୍ରଗାମୀ ଚିନ୍ତାନାୟକଙ୍କ ଭାଗ୍ୟରେ ଲିଖିତ ଅପବାଦର ସୁଧାର ପାଇଁ ଏ ମୋର ଯତ୍‌ସାମାନ୍ୟ ପ୍ରଚେଷ୍ଟା ମାତ୍ର ।

ଲକ୍ଷ୍ମୀକାନ୍ତଙ୍କ ବଳିଷ୍ଠ ଗଦ୍ୟଶୈଳୀର ଅନ୍ୟ କେତେକ ପ୍ରମାଣ ଉପସ୍ଥାପିତ କରାଯିବା ଉଚିତ ମନେ କରୁଛି । ତାଙ୍କର ଅଧିକାଂଶ ବଳିଷ୍ଠ ଗଦ୍ୟଶୈଳୀର ଲେଖାଗୁଡ଼ିକୁ ପ୍ରବନ୍ଧ ନାମରେ ନାମିତ କରାଯାଇ ତାଙ୍କ ଗ୍ରନ୍ଥାବଳୀରେ ସ୍ଥାନିତ କରାଯାଇଛି । ବାସ୍ତବରେ ସେ ସବୁ ପ୍ରବନ୍ଧ ନୁହନ୍ତି । ଯେମିତି ଦେଖନ୍ତୁ ତାଙ୍କ ଆତ୍ମଜୀବନୀ-ପୂରା ଦଶୋଟି ଅମୂଲ୍ୟ ହୃଦୟସ୍ପର୍ଶୀ ଏବଂ ହୃଦୟ-ବିଦାରକ ଅନୁଭବ ଆଉ ଜୀବନ ପାତ୍ରରେ ଆଉଟା ସୁନା ପରି ଝଲମଲ ଅଭିଜ୍ଞତାର ଅଭିବ୍ୟକ୍ତି । ତାଙ୍କର ଶୈଶବ ସ୍ମୃତି, ବାଲ୍ୟସ୍ମୃତି, କୈଶୋର ସ୍ମୃତି, କୈଶୋର ସ୍ୱପ୍ନ, ଯୌବନ ପଥେ, ନବବସନ୍ତର ସଂଭାଷଣ, ମଙ୍ଗଳ ମହୁରୀ, ନିଭୃତ ନିଶୀଥେ, ରୋଗ ଶଯ୍ୟା, ଜୀବନ୍ତ ମରଣ ଏବଂ ନବଜାଗରଣ-ଏଗୁଡ଼ିକ ପଦ୍ୟ ନୁହେଁ କି ଶୁଷ୍କ ଗଦ୍ୟ ନୁହେଁ । ପ୍ରବନ୍ଧ ବି ନୁହେଁ । ତେବେ କ'ଣ ସେ ସବୁ ? ନିମ୍ନ ପ୍ରଦତ୍ତ ଅନୁଚ୍ଛେଦଟିରୁ ପାଠକ ନିଜେ ବିଚାର କରନ୍ତୁ-

'ରାତ୍ରିର ତୃତୀୟ ପ୍ରହର ଅତୀତ ହେବାକୁ ବସିଲା- ତେବେ ସୁଦ୍ଧା ମୋର ଅଭିଶପ୍ତ ପ୍ରାଣରେ ଦୟାମୟୀ ନିଦ୍ରା ଦେବୀଙ୍କ

କୋମଳ ପରଶର କୌଣସି ସୁରାକ ପାଇଲି ନାହିଁ । ଜଗତଯାକ ସମସ୍ତେ ସୁଷୁପ୍ତ-ଜନମାନବ, ପଶୁପକ୍ଷୀ, କୀଟପତଙ୍ଗ କାହାରି ଚେତନା ନାହିଁ, ବାୟୁ ସ୍ଥଗିତ, ବୃକ୍ଷପତ୍ର ମର୍ମରହୀନ, ଦିଗ୍‌ମଣ୍ଡଳ ଶବ୍ଦଶୂନ୍ୟ, ପୃଥିବୀ ଧୀର, ସ୍ଥିର, ସ୍ତବ୍ଧ, ବିଶ୍ୱଜଗତ ପ୍ରଶାନ୍ତ । ଏକା ମୋହରି ଆଖି ଦିଓଟି ଅନିମେଷ ବିସ୍ଫାରିତ, ଜାଗ୍ରତ । ସେହି ନିବିଡ଼ ନିସ୍ତବ୍ଧତା ମଧ୍ୟ ଦେଇ ଗୋଟିଏ ଅବିରାମ ଅସରନ୍ତି ସଙ୍ଗୀତ ପ୍ରବାହ ଅନ୍ତଃସଲିଳା ଫଲ୍‌ଗୁ ପରି ତରତର ବହିଯାଉଛି । ଏହି ବିଶ୍ୱ ସଙ୍ଗୀର ଅମର ନିର୍ଝର ଝରି ଆସୁଛି ପ୍ରତି ଗ୍ରହ ନକ୍ଷତ୍ରରୁ, ପ୍ରତି ତୃଣପତ୍ରରୁ - ଏହି ମହାସଙ୍ଗୀତର ନୀରବ ଝଙ୍କାର ବାଜି ଉଠୁଛି ଦିଗନ୍ତ ବିସ୍ତୃତ ନଭୋନୀଳିମାରେ ପବନର ପ୍ରତି ଅଳସ ହିଲ୍ଲୋଳରେ । ଚରାଚର ସ୍ଥାବରଜଙ୍ଗମ ସମସ୍ତ ବିଶ୍ୱ ଜଗତ ଯେପରି ମଦିର ତାଳରେ ଭରପୂର ମୁଗ୍ଧ । ଦେଖିଲି ହୃଦଯନ୍ତ୍ରର ପ୍ରତ୍ୟେକ ସ୍ପନ୍ଦନ ଏଥିରେ ଯୋଗ ଦେଇଛି । ଧମନୀର ପ୍ରତି ଶୋଣିତ ଚଳନ ସମତାନରେ ବାଜୁଛି, ଅନ୍ତରର ପ୍ରତି ତନ୍ତ୍ରୀ ଏହି ବିଶ୍ୱଭରା ମହାତାନରେ ଝଙ୍କୃତ ହେଉଛି । ମୋର ସତ୍ତା ବିଲୁପ୍ତ-ମୁଁ ଏହି ସଂଗୀତର ଗୋଟିଏ କ୍ଷୁଦ୍ରାଦପି କ୍ଷୁଦ୍ର ଅଂଶ ମାତ୍ର । କାହାରି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ-ଗ୍ରହ, ତାରା, ମେଘ, ପବନ, ଧୂଳିକଣା ପର୍ଯ୍ୟନ୍ତ ସମସ୍ତେ ଏହି ଗୁପ୍ତ ଅମର ସଂଗୀତରେ ଚାଳିତ-ସାରାବିଶ୍ୱ କେବଳ ସଂଗୀତମୟ ।'

(ନିଭୃତ ନିଶୀଥେ-ପରିଚ୍ଛେଦ ୨ ଦ୍ରଷ୍ଟବ୍ୟ)

ଏହା କ'ଣ ଯଥେଷ୍ଟ ନୁହେଁ, ପ୍ରମାଣ ଉଦ୍ଦେଶ୍ୟରେ ଯେ ଲକ୍ଷ୍ମୀକାନ୍ତ କେବଳ ଜଣେ ଗୀତିକାର କବି ନୁହନ୍ତି, ତା'ଠାରୁ ଢେର୍ ବେଶି କିଛି ? ତାଙ୍କୁ ଜଣେ ଋଷି, ଦାର୍ଶନିକ, ଦ୍ରଷ୍ଟା, ଅନାହତ ପ୍ରଣବ ଧ୍ୱନି ଶ୍ରାବକ ଯୋଗୀ ସଂଗୀତଜ୍ଞ କୁହାଯାଇ ପାରେନା କି ? ଏ ଲକ୍ଷଣଯୁକ୍ତ କବିମାନଙ୍କୁ 'ଲିରସିଷ୍ଟ', 'ରେଡ଼ି ଚାର୍ମର ଅଫ୍ ଦ ମୋମେଣ୍ଟ' କହି ଇତିହାସର ମଳିନ ଆଲୋକରେ ଅପ୍ରତିଭ କରି ପ୍ରଦର୍ଶିତ କରାଇବା ଦ୍ୱାରା ଓଡ଼ିଆ ସାହିତ୍ୟର ଉଚିତ ମୂଲ୍ୟାୟନ କରାଯାଉଛି କି ?

ଲକ୍ଷ୍ମୀକାନ୍ତଙ୍କ କବିତାର ଗ୍ରାହକ ଅବଶ୍ୟ ସଂଖ୍ୟାଧିକ । ଲୋକମାନଙ୍କ ତୁଣ୍ଡରେ ତାଙ୍କର ଅନେକ ଉଚ୍ଚକୋଟୀର କବିତା ସଂଗୀତ ଆକାରରେ ପରିବେଷିତ ହେଉଛି । ବେତାର କେନ୍ଦ୍ରରୁ ମର୍ମସ୍ପର୍ଶୀ ତାଙ୍କ ରଚିତ ଜୀବନ ସଂଗୀତ- 'ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ' ମଧ୍ୟେ ମଧ୍ୟେ ପ୍ରସାରିତ ହୁଏ ଯାହା ଶ୍ରୋତାର କାନରେ ପଶି ହୃଦୟ ପର୍ଯ୍ୟନ୍ତ ପହଞ୍ଚିପାରେ, କିନ୍ତୁ ଖୁବ୍ କମ୍ ଶ୍ରୋତା ଏ ସଂଗୀତର ରଚୟିତାଙ୍କ ଜୀବନର ଗଭୀର ଟ୍ରାଜେଡ଼ି ସହିତ ତାହାକୁ ମିଳାଇ ମର୍ମ ବୁଝିବାକୁ ଚେଷ୍ଟା କରନ୍ତି । ଟ୍ରାଜେଡ଼ି ତାଙ୍କୁ କେବଳ ଥରଟିଏ ବ୍ୟାଧି ରୂପେ ବଜ୍ରାଘାତ ଦେଇ ନିବୃତ୍ତ ହୋଇନଥିଲା ବରଂ ଜୀବନବ୍ୟାପୀ ତାହା ତାଙ୍କୁ ବାରମ୍ବାର ଧରାଶାୟୀ କରି ଚାଲିଥିଲା, କିନ୍ତୁ ତାଙ୍କର ଦୁର୍ଦ୍ଦମନୀୟ ବ୍ୟକ୍ତିତ୍ୱ ବାରମ୍ବାର ମୁଣ୍ଡ ଟେକି ଠିଆ ହେଉଥିଲା ଟ୍ରାଜେଡ଼ି ଓ ତା'ର କର୍ତ୍ତା ବିଧାତା ସମ୍ମୁଖରେ ।

ଲକ୍ଷ୍ମୀକାନ୍ତ ଏବଂ ତାଙ୍କ ପରିବାରର ଏକ ସୁନେଲି ସ୍ୱପ୍ନ ବହୁବର୍ଷର ବାସ୍ତବତା ପ୍ରାପ୍ତ ହେଲା ୧୯୨୯ରେ । ତାହା ଥିଲା ଗୋଟିଏ ପ୍ରେସ୍ । ପ୍ରେସ୍ ବସିବ, ସେଥିରୁ ଛପାହେବ ଏକ ସାହିତ୍ୟ ପତ୍ରିକା-ଏବଂ ସେଇ ନିରୀହ ସ୍ୱପ୍ନଟି ମଧ୍ୟ ବାସ୍ତବତା ପ୍ରାପ୍ତ ହେଲା । ସେ ପୁଣି ଏକ ଐତିହାସିକ ଘଟଣା । କାରଣ ୧୮୩୫ରେ ନିର୍ମିତ ସେ ପ୍ରେସ୍ ସେତେବେଳକୁ ଇତିହାସ ପାଲଟି ଯାଇଥାଏ । ତାହା ଥିଲା ପ୍ରକୃତରେ ଫକୀରମୋହନଙ୍କ ପ୍ରେସ୍ ଯାହାକୁ କଲିକତାର ମିସ୍‌ନାରୀମାନଙ୍କଠାରୁ କିଣି ନେଇ ସେଥିରୁ ବାଲେଶ୍ୱରରୁ ଏକ ସମ୍ବାଦପତ୍ର ପ୍ରକାଶ କରିବାକୁ ଯାଇ ବ୍ୟାସକବି ଯେପରି ହଟହଟା ହୋଇଥିଲେ ତାହା ତାଙ୍କ ଆତ୍ମଜୀବନୀରୁ ମିଳିବ ।

ପ୍ରେସ୍ ବସିଲା । ନାଁ ଦିଆଗଲା-ଗୋପୀନାଥ ପ୍ରେସ୍ । ଗୋପୀନାଥ କୁଳଦେବତା । ତାଳପଦାର ଜମିଦାର ପରିବାର ଶ୍ରୀକୃଷ୍ଣଭକ୍ତ ବୈଷ୍ଣବ । ପୁଣି ବ୍ୟାଧିମୁକ୍ତ ହେବା ପରେ ଲକ୍ଷ୍ମୀକାନ୍ତ ଦୀକ୍ଷା ନେଲେ ଏବଂ ବୈଷ୍ଣବ ଧର୍ମାଚରଣ ସହିତ ନିଷ୍ଠାପର ଜୀବନଯାପନରେ ବ୍ରତୀ ହେଲେ । ଏହି କାରଣରୁ ସେ କାନ୍ତକୋମଳ ବୈଷ୍ଣବୀୟ କବିତାବଳୀ ରଚନାରେ ଉଦ୍‌ବୁଦ୍ଧ ହୋଇଥିଲେ । ଅସଂଖ୍ୟ ଭଜନ ଜଣାଣ କୀର୍ତ୍ତନ ଏବଂ ରାସ ସଂଗୀତର କବି ଲକ୍ଷ୍ମୀକାନ୍ତ କିନ୍ତୁ ଜଣେ ଭୋଳା ବୈଷ୍ଣବ ନଥିଲେ । ତାଙ୍କର ବହୁମୁଖୀ ପ୍ରତିଭା ବିଭିନ୍ନ କର୍ମ ଯୋଜନାରେ ରୂପାୟିତ ହେବାରେ ଅନବରତ ଚେଷ୍ଟିତ ଥିଲା । ସେ ଯୁଗର ରାଜନୀତିଠାରୁ ସେ ଦୂରେଇ ରହୁନଥିଲେ । ତେଣୁ ଆବଶ୍ୟକ ପଡୁଥିଲା ପ୍ରେସ୍‌ଟିଏ । ସେଥିରୁ ପ୍ରକାଶୋଦ୍ୟତ ଥିଲା ପରବର୍ତ୍ତୀ ବିଖ୍ୟାତ 'ଡଗର' ପତ୍ରିକା, କିନ୍ତୁ ପ୍ରେସ୍ ବସୁ ନବସୁଣୁ ପଡ଼ିଲା ଚଡ଼କ ପରେ ଚଡ଼କ ଲକ୍ଷ୍ମୀକାନ୍ତଙ୍କ ମୁଣ୍ଡ ଉପରେ । ଆରମ୍ଭ ହେଲା ମୃତ୍ୟୁର ତାଣ୍ଡବଲୀଳା । ପରିବାରର ପ୍ରେସ୍ ହିତାକାଂକ୍ଷୀ ଓ ପ୍ରେରଣାଦାତା ମାମୁଁ ରାଧାଶ୍ୟାମ ଦାସ ପ୍ରଥମେ ବିଦାୟ ନେଲେ । ପରେ ପରେ, ଅଳ୍ପ ବ୍ୟବଧାନରେ ଚାଲିଲେ ଦୁଇ ସାନ ଭାଇ-ସୀତାକାନ୍ତ, କମଳାକାନ୍ତ । ତା'ପରେ ତାଙ୍କ ପରିବାରର ଅନ୍ୟତମ ବିପ୍ଳବୀ ନାରୀ, ଲକ୍ଷ୍ମୀକାନ୍ତଙ୍କ ସାନଭଉଣୀ, ଆଉ ଲବଣ ସତ୍ୟାଗ୍ରହରେ

ଜେଲ୍ ଦଣ୍ଡ ଭୋଗିସାରି ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ନିଜ ଘର ପ୍ରେସ୍‌ରୁ ଖଣ୍ଡିଏ ସ୍ୱତନ୍ତ୍ର ଗଳ୍ପ ପତ୍ରିକା ପ୍ରକାଶ ପାଇଁ ଉଦ୍ୟମରତା- କୋକିଳା ।

ମହାତ୍ମା ଗାନ୍ଧୀଙ୍କ ଲବଣ ସତ୍ୟାଗ୍ରହ, ୧୯୩୦ ତାଳପଦା ଜମିଦାର ବଂଶକୁ ଏକ ପ୍ରକାର ନିଃଶେଷ କରିଦେଲା । ଲକ୍ଷ୍ମୀକାନ୍ତଙ୍କ ଦୁଇ ପୁଅ ନିତ୍ୟାନନ୍ଦ, ଗୌରଚନ୍ଦ୍ର ସତ୍ୟାଗ୍ରହୀ ପାଲଟି ଜେଲ୍ ଗଲେ । ପିତା ଭାଗବତ ପ୍ରସାଦ ମହାତ୍ମା ଗାନ୍ଧୀଙ୍କ ଭକ୍ତ ପାଲଟିଲେ, ବିହାର-ଓଡ଼ିଶା କାଉନସିଲ୍ ସଭ୍ୟ ପଦରୁ ଇସ୍ତଫା ଦେଲେ, ଅଳ୍ପ ଦିନ ପରେ ଇହଧାମରୁ ବିଦାୟ ନେଲେ । ତାଙ୍କ ପଛେ ପଛେ ମାତା ରାଧାମଣି ମଧ୍ୟ ସଂସାରରୁ ବିଦାୟ ନେଲେ । ବାକି ରହିଗଲେ କିଏ ପ୍ରେସ୍ ଚଳାଇବାକୁ, 'ଡଗର' ପତ୍ରିକା ପ୍ରକାଶ କରିବାକୁ ? ସେଇ ହେଲେ କର୍ମଯୋଗୀ ଲକ୍ଷ୍ମୀକାନ୍ତ । ଶେଷ ପର୍ଯ୍ୟନ୍ତ ଏଇ କର୍ମଯୋଗୀ କର୍ମରୁ ବିରତ ପଳାୟନପନ୍ଥୀ ବାବାଜୀ ହୋଇନଥିଲେ । ସେ ଥିଲେ ଲଢୁଆ ମଣିଷ । **ଗୀତାର ଅର୍ଜୁନ ଯେପରି ମହାଭାରତ ଯୁଦ୍ଧ ଆରମ୍ଭରେ ବିଷାଦବଶତଃ ଗାଣ୍ଡିବ ଫିଙ୍ଗି ଦେଇଥିଲେ ଏବଂ ସେଇଠାରୁ ଆରମ୍ଭ ହୋଇଥିଲା ତାଙ୍କର ଯଥାର୍ଥ ଜୀବନ ଅର୍ଥାତ୍ ନବଜୀବନ ବା ପୁନର୍ଜନ୍ମ ସେହିପରି ବିଧାତା-ପ୍ରେରିତ ବ୍ୟାଧି ଏକ ଅଯାଚିତ ଦୈବୀ ଅଭିଶାପ ରୂପରେ ଲକ୍ଷ୍ମୀକାନ୍ତଙ୍କୁ ଧ୍ୱଂସ କରିଦେବାକୁ ଚାହିଁଥିଲେ ମଧ୍ୟ ପରିଣତିରେ ତାଙ୍କ ପାଇଁ କର୍ମ, ଜ୍ଞାନ ଏବଂ ଭକ୍ତିଯୋଗରେ ସିଦ୍ଧିର ମାର୍ଗ ଫିଟାଇଥିଲା ।**

ଲକ୍ଷ୍ମୀକାନ୍ତଙ୍କ କ୍ଷୁଦ୍ରଗଳ୍ପ 'ବୁଢ଼ାଶଙ୍ଖାରି' ଯେପରି ତାଙ୍କ ରଚିତ ବହୁ କ୍ଷୁଦ୍ରଗଳ୍ପ ଭିତରୁ କାଳୋତ୍ତୀର୍ଣ୍ଣ ସେହିପରି ତାଙ୍କ ରଚିତ ଉଦ୍ଭଟ ଉପନ୍ୟାସ- 'କଣାମାମୁଁ' । ଏହାର ପଟ୍ଟାନ୍ତର ଖୋଜି ବସିଲେ ଆମେ ପହଞ୍ଚିବା ଯେଉଁଠି ସେ ଯୁଗ ଅଦ୍ୟାବଧି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅପରିଚିତ । ଏହାକୁ ଇଂରାଜୀରେ କହୁଛନ୍ତି- ଆବ୍ସ୍ୱର୍ଡ । ଆମ ପାଠକ ଗୋଷ୍ଠୀ ଫାଣ୍ଟାସି, ଆବ୍‌ସର୍ଡ଼ ଇତ୍ୟାଦିକୁ ନାକ ଟେକନ୍ତି । କହନ୍ତି ପିଲାଙ୍କ ଗପ, କିନ୍ତୁ ବର୍ତ୍ତମାନ ବିଶ୍ୱର ସର୍ବାଧିକ ପାଠକୀୟ ପ୍ରୀତି ଉପାର୍ଜନକ୍ଷମ 'ହ୍ୟାରି ପଟ୍ଟର' ଗଳ୍ପମାଳାର ଲେଖିକା, ଜେ.କେ. ରୌଲିଂଙ୍କୁ ପଚରାଗଲେ ସେ କହିବେ- ହ୍ୟାରି ପଟ୍ଟରର ପ୍ରେରଣା ସେ ପାଇଛନ୍ତି ଭାରତରୁ, ଭାରତର ପୁରାଣରୁ, ତନ୍ତ୍ରରୁ, ବେତାଳ ଗଳ୍ପରୁ, ଯଦିଚ ଡାହାଣୀ ସାଧନବିଦ୍ୟା ବ୍ରିଟେନ ପାଇଁ ନୂଆ ନୁହେଁ ।

ଲକ୍ଷ୍ମୀକାନ୍ତଙ୍କ ଏହି ଉପନ୍ୟାସ 'କଣାମାମୁଁ' ଇଂରାଜୀରେ ଅନୁବାଦିତ ହୋଇଛି ଓ ସର୍ବଭାରତୀୟ ସ୍ତରରେ ଲୋକପ୍ରିୟତା ଅର୍ଜନ କରିଛି । ତାଙ୍କର ଅନ୍ୟ କୃତି ବିଶେଷତଃ 'ଅସହଯୋଗୀର ଆତ୍ମକଥା'କୁ ଯଥାଶୀଘ୍ର ଇଂରାଜୀରେ ଅନୁବାଦ କରାଯାଇପାରିଲେ ତାଙ୍କର ଦୂରଦୃଷ୍ଟିସମ୍ପନ୍ନ ସାରସ୍ୱତ ପ୍ରତିଭାର ପ୍ରମାଣ ଆହୁରି ଅକାଟ୍ୟ ହୋଇପାରନ୍ତା । ଏ ଦିଗରେ ଫକୀରମୋହନ ବିଶ୍ୱବିଦ୍ୟାଳୟର କର୍ତ୍ତବ୍ୟ ଅନେକ । ଉପରୋକ୍ତ ଆଲୋଚନାରେ ମୁଁ ଲକ୍ଷ୍ମୀକାନ୍ତଙ୍କୁ ଜଣେ ବଳିଷ୍ଠ ଗଦ୍ୟଶୈଳୀର ପ୍ରବର୍ତ୍ତକ ରୂପେ ପ୍ରମାଣ କରିବାକୁ କିଛି ଯୁକ୍ତି ଉପସ୍ଥାପନ କରିଛି । ତା'ର ଅର୍ଥ ନୁହେଁ ଯେ ମୁଁ ତାଙ୍କର କବି ପ୍ରତିଭାର ପୂଜାରୀ ନୁହେଁ । କିଏ ଭୁଲିଯିବ ତାଙ୍କର ଜୀବନ ସଂଗୀତ ଅନ୍ତର୍ଗତ ସେସବୁ ରାଗରାଗିଣୀଭରା ଉଚ୍ଚାଙ୍ଗ ଗେୟ କବିତା ସବୁକୁ ? 'କିଏ ସେ ଡାକୁଛି / ନଈ ସେପାରିରେ/ ରହି ରହି କେଡ଼େ ବାଗରେ / ଦୋଦୋଚିହ୍ନା ସ୍ୱର / ଶୁଣିଥିଲି ପରା / କେତେ ଯୁଗ ଯୁଗ ଆଗରେ, କିମ୍ବା 'ଦେ ମୋତେ ବାଇୟା କରି, ଆରେ ମୋ' ବାଇୟା ରାଜା', ଅଥବା 'ସୁନ୍ଦର ହେ, ମମ ମନ୍ଦିରେ କର ଅଭିସାର' ଏହିପରି ବହୁ ବହୁ ଚମତ୍କାରୀ ଉଦାହରଣ । ସେହିପରି କିଏ ଅସ୍ୱୀକାର କରିପାରିବ ଲକ୍ଷ୍ମୀକାନ୍ତଙ୍କ 'ବନ୍ଦେ ଉତ୍କଳ ଜନନୀ'ର ସମ୍ବେଦନକୁ ଯାହା ବର୍ତ୍ତମାନ ଓଡ଼ିଆ ଜାତିର ଜାତୀୟ ସଂଗୀତ ।

ସେହିପରି କିଏ ଅସ୍ୱୀକାର କରିପାରିବ ଲକ୍ଷ୍ମୀକାନ୍ତଙ୍କ 'ବନ୍ଦେ ଉତ୍କଳ ଜନନୀ'ର ସମ୍ବେଦନକୁ ଯାହା ବର୍ତ୍ତମାନ ଓଡ଼ିଆ ଜାତିର ଜାତୀୟ ସଂଗୀତ ।

ଏସବୁ ସତ୍ତ୍ୱେ, ମୋ' ମତରେ ଲକ୍ଷ୍ମୀକାନ୍ତଙ୍କ ସ୍ଥାନ ରାଧାନାଥ, ଫକୀରମୋହନଙ୍କ ପରେ ବା ସତ୍ୟବାଦୀ ଯୁଗ ପୂର୍ବରୁ କ୍ରମାନ୍ୱୟରେ ନିର୍ଦ୍ଦିଷ୍ଟ କରାଯିବା ଅସଂଗତ । ଚିନ୍ତାର ମୌଳିକତା କାରଣରୁ ତାଙ୍କୁ ଜଣେ ସ୍ୱତନ୍ତ୍ର ଯୁଗସ୍ରଷ୍ଟା ହିଁ କୁହାଯିବା ସମୀଚୀନ । ତାଙ୍କ ସାହିତ୍ୟର ଶୈଳୀ ଚର୍ଚ୍ଚା କରାଯିବା ଆବଶ୍ୟକ । ତେବେ ଯାଇ ସାହିତ୍ୟର ଇତିହାସରେ ତାଙ୍କ ସ୍ଥାନ ନିରୂପିତ ହେବ ।

ମୋତେ ଏହି ସମ୍ମାନଜନକ ଦାୟିତ୍ୱ ଦିଆଯାଇଥିବାରୁ ମୁଁ ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱରର କର୍ତ୍ତୃପକ୍ଷଙ୍କ ନିକଟରେ ଚିର କୃତଜ୍ଞ ।

(ତା. ୨୦ ଫେବୃଆରୀ, ୨୦୦୪ - ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର ପକ୍ଷରୁ ଭଦ୍ରକ ମହାବିଦ୍ୟାଳୟଠାରେ ଆୟୋଜିତ କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମାରକ ବକ୍ତୃତାମାଳା ଉପଲକ୍ଷେ ପ୍ରଦତ୍ତ ବକ୍ତବ୍ୟର ପ୍ରତିଲିପି )

ପ୍ଲଟ ନଂ-୭୮୮
ଶହୀଦ ନଗର, ଭୁବନେଶ୍ୱର-୭

# ପ୍ରଚଣ୍ଡ ଜ୍ୟୋତିଷ୍ମାନ ପଠାଣି ସାମନ୍ତ

ଗିରିଜା ଶଙ୍କର ତରାସିଆ

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଅର୍ଥାତ୍ ଆଜକୁ ୧୭୩ ବର୍ଷ ପୂର୍ବେ ଉତ୍କଳ ଭୂଖଣ୍ଡର ଅରଣ୍ୟାନୀ ଘେରା ଖଣ୍ଡପଡ଼ା ପରି ଏକ ଗଡ଼ଜାତରେ କ୍ଷେତ୍ରୀୟ ବଂଶଜ ଭରଦ୍ୱାଜ ଗୋତ୍ରୀ ପଠାଣି ସାମନ୍ତ ଜନ୍ମ ହୋଇ ତାଙ୍କ ଜୀବନବ୍ୟାପୀ ସାଧନାର ଫଳଶ୍ରୁତି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ରଚନା କରି ପ୍ରାଚ୍ୟ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ଶ୍ରେଷ୍ଠ ସ୍ଥାନର ଅଧିକାରୀ ହୋଇଥିଲେ ସେ ପ୍ରମାଣ କରି ଯାଇଛନ୍ତି ଯେ ପ୍ରାଚୀନ ଭାରତର ବୌଦ୍ଧିକ ଧାରା ସଂପୂର୍ଣ୍ଣ ଲୁପ୍ତ ହୋଇ ନାହିଁ ବରଂ ତାହା ପୁନର୍ଜୀବିତ ହୋଇପାରିବ । ଆଧୁନିକ ଜ୍ୟୋତିର୍ବିଜ୍ଞାନର ଆବିର୍ଭାବ ପୂର୍ବରୁ ଦ୍ୱିତୀୟ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଭାରତବର୍ଷରେ ବରାହ ମିହିର, ଆର୍ଯ୍ୟଭଟ୍ଟ, ବ୍ରହ୍ମଗୁପ୍ତ, ଭାସ୍କରାଚାର୍ଯ୍ୟ ପ୍ରଭୃତି ମନୀଷୀମାନେ ଜ୍ୟୋତିର୍ବିଜ୍ଞାନରେ ଶୀର୍ଷ ସ୍ଥାନରେ ପହଞ୍ଚିଥିଲେ । ଏକାଦଶ ଶତାବ୍ଦୀରେ ହୋଇଥିବା ଶତାନନ୍ଦ ନାମକ ପ୍ରଖ୍ୟାତ ଜ୍ୟୋତିର୍ବିଜ୍ଞାନଙ୍କ ଆବିର୍ଭାବ ଘଟିବା ପରେ ଅନେକ ବର୍ଷର ବ୍ୟବଧାନ ପରେ ଉତ୍କଳ ଜନନୀ ପଠାଣି ସାମନ୍ତଙ୍କ ପରି ଜଣେ ଯୋଗ୍ୟ ସନ୍ତାନକୁ ଓଡ଼ିଶା କୋଳରେ ଧାରଣ କରିବାର ସୌଭାଗ୍ୟ ଲାଭ କରିଥିଲା ।



୧୮୩୫ ମସିହା ପୌଷମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ପିତା ଶ୍ୟାମବନ୍ଧୁ ସିଂହ ଏବଂ ମାତା ବିଷ୍ଣୁମାଳୀ ଦେବୀଙ୍କ ପୁତ୍ର ହିସାବରେ ଖଣ୍ଡପଡ଼ାରେ ଜନ୍ମଗ୍ରହଣ କରିଥିବା ଶିଶୁର ନାମ ଚନ୍ଦ୍ରଶେଖର ରଖାଯାଇଥିଲା । ଏହି ଶିଶୁ ଉପରେ ଅନେକ ଭାଇ ଓ ଭଉଣୀ ଅକାଳରେ ମୃତ୍ୟୁବରଣ କରିଥିବାରୁ ପିତାମାତା ଶିଶୁଟିର ନାମ ରଖିଥିଲେ ପଠାଣି । ଉତ୍କଳବାସୀଙ୍କ ନିକଟରେ ଅତି ଆଦରର ପରିଚିତ ପଠାଣି ସାମନ୍ତ ବାଲ୍ୟଗୁରୁ କୃତ୍ତିବାସ ରଥ ଏବଂ ଆନନ୍ଦ ଖାଡ଼ଙ୍ଗାଙ୍କଠାରୁ ବାଲ୍ୟଶିକ୍ଷା ଲାଭ କରିଥିଲେ । ସେ ମାତ୍ର ସାତବର୍ଷ ବୟସରେ ବର୍ଣ୍ଣଶିକ୍ଷା, ପଣକିଆ ଦଶକ, ରଘୁବଂଶ କୁମାର ସମ୍ଭବ, ଅମର କୋଷ, କିରତାର୍ଜ୍ଜନୀୟ, ମେଘଦୂତ, ହଂସ ଦୂତ ଆଦି ପାଠ କରିବା ସହିତ କୈଶର ବୟସରୁ ଭାସ୍କରାଚାର୍ଯ୍ୟ, ବରାହ ମିହିରଙ୍କ ପରି ପ୍ରଖ୍ୟାତ ଜ୍ୟୋତିର୍ବିଦମାନଙ୍କର ସିଦ୍ଧାନ୍ତମାନ ଅନୁଶୀଳନ କରିବାକୁ ଲାଗିଲେ । ବାଇଶି ବର୍ଷ ବୟସରେ ଅନୁଗୁଳର ତୁରଙ୍ଗ ନିବାସୀ ଦାଶରଥି ବୀରବର ଜଗଦ୍ଦେବ କ୍ଷତ୍ରୀୟବର ସିଂହଙ୍କର ପରମା ସୁନ୍ଦରୀ କନ୍ୟା ସୀତା ଦେବୀଙ୍କୁ ୧୮୫୭ ମସିହା ମାଘ ମାସ ଶୁକ୍ଳ ଦ୍ୱାଦଶୀ ତିଥିରେ ବିବାହ କରିଥିଲେ । ସମଗ୍ର ଜୀବନ ରୋଗାକ୍ରାନ୍ତ ଏବଂ ଦାରିଦ୍ର୍ୟ ମଧ୍ୟରେ କଟାଇଥିଲେ ମଧ୍ୟ ସେ ନିଜ ସାଧନାରୁ କଦାପି ବିଚ୍ୟୁତ ହୋଇ ନଥିଲେ ।

୧୮୬୯ ମସିହା ଚୈତ୍ରମାସ ଶୁକ୍ଳପକ୍ଷ ଦ୍ୱିତୀୟା ମଙ୍ଗଳାବାର ମେଷ ସଂକ୍ରାନ୍ତି ଅପ୍ରେଲ ୧୨ ତାରିଖରୁ ସେ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ରଚନା ଆରମ୍ଭ କଲେ । ଦୀର୍ଘ ତେଇଶି ବର୍ଷର ପର୍ଯ୍ୟବେକ୍ଷଣ ଓ ଅନୁଶୀଳନର ଫଳସ୍ୱରୂପ ତାଙ୍କର ଅନନ୍ୟ ମହାର୍ଘ୍ୟ ଗ୍ରନ୍ଥ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ରଚନା ୧୮୯୨ ମସିହା ମାର୍ଗଶିର କୃଷ୍ଣପକ୍ଷ ନବମୀ ଶନିବାର ଦିନ ସମାପ୍ତ ହେଲା । ସଂସ୍କୃତ ଭାଷାରେ ତାଳପତ୍ର ପୋଥିରେ ଲିଖିତ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ଶ୍ଳୋକ ସଂଖ୍ୟା ଥିଲା ୨୫୦୦ । ତନ୍ମଧ୍ୟରୁ ସାମନ୍ତଙ୍କର ନିଜସ୍ୱ ଶ୍ଳୋକ ସଂଖ୍ୟା ୨୨୮୪ ଗୋଟି ହୋଇଥିବା ବେଳେ ଅନ୍ୟାନ୍ୟ ଗ୍ରନ୍ଥ ସମୂହରୁ ୨୧୬ ଗୋଟି ଶ୍ଳୋକ ଆନୀତ ହୋଇଥିଲା । **'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥକୁ ସ୍ଥୂଳ ଭାଗରେ ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ ଭାବେ ଦୁଇ ଭାଗରେ ବିଭକ୍ତ କରାଯାଇଛି ।** ପୂର୍ବାର୍ଦ୍ଧରେ ପ୍ରଥମ ୧୫ଟି ଅଧ୍ୟାୟ ଏବଂ ଉତ୍ତରାର୍ଦ୍ଧରେ ଶେଷ ୯ଟି ଅଧ୍ୟାୟ ଅନ୍ତର୍ଭୁକ୍ତ । ପରିଚ୍ଛେଦଗୁଡ଼ିକୁ ମଧ୍ୟମାଧିକାର, ସ୍ଫୁଟନାଧିକାର, ତ୍ରିପ୍ରଶ୍ନାଧିକାର, ଗୋଳାଧିକାର ଏବଂ କଳାଧିକାର ପରି ପାଞ୍ଚଗୋଟି ଅନୁବିଭାଗରେ ବିଭକ୍ତ କରାଯାଇଛି ।

ରେଭେନ୍‌ସା ମହାବିଦ୍ୟାଳୟର ପ୍ରାକ୍ତନ ପଦାର୍ଥ ବିଜ୍ଞାନ ଅଧ୍ୟାପକ ଗୁଣଜ୍ଞ ଯୋଗେଶ ଚନ୍ଦ୍ର ରାୟ ଏବଂ ତତ୍କାଳୀନ ବିଶିଷ୍ଟ ଶିକ୍ଷାବିତ୍ କବିବର ରାଧାନାଥ ରାୟ ପ୍ରମୁଖ ହୃଦୟବାନ ବ୍ୟକ୍ତିଙ୍କ

ଯୋଗୁଁ ସାମନ୍ତଙ୍କର କୃତି ଲୋକଲୋଚନକୁ ଆସିବା ସମ୍ଭବପର ହୋଇଥିଲା । ସାମନ୍ତ ସିଦ୍ଧାନ୍ତଦର୍ପଣ ଗ୍ରନ୍ଥରେ ଆଗାମୀ ଦଶକୋଟି ଦିନ ଅର୍ଥାତ୍ ୨ ଲକ୍ଷ ୭୩ ହଜାର ୯୭୨ ବର୍ଷ ୭ ମାସ ୧୦ ଦିନ ନିମନ୍ତେ ଗ୍ରହ ନକ୍ଷତ୍ରାଦିଙ୍କର ସ୍ଥିତି, ପ୍ରବକ, ଖଣ୍ଡଫଳ ଆଦି ସଂପର୍କରେ ଗଣନା କରି ବିଶଦ ଭାବରେ ବର୍ଣ୍ଣନା କରିଯାଇଛନ୍ତି । ତାଙ୍କ ଅମର କୀର୍ତ୍ତିକୁ ସ୍ୱୀକୃତି ଦେବାକୁ ଯାଇ ତଦନାନ୍ତୀନ ବ୍ରିଟିଶ ସରକାର କଟକଠାରେ ଏକ ସ୍ୱତନ୍ତ୍ର ଦରବାର ଆହୂତ କରି ୧୮୯୪ ମସିହା ସେପ୍ଟେମ୍ବର ମାସ ୧୦ ତାରିଖ ଦିନ ସାମନ୍ତଙ୍କୁ ମହାମହୋପାଧ୍ୟାୟ ଉପାଧିରେ ଭୂଷିତ କରିଥିଲେ । ଏହି ଉପାଧିରେ ସମ୍ମାନିତ ହୋଇ ସେ ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ସିଂ ହରିଚନ୍ଦ ମହାପାତ୍ର ସାମନ୍ତ ନାମରେ ସୁବିଦିତ ହେବାକୁ ଲାଗିଲେ । ସେ ସ୍ୱହସ୍ତ ନିର୍ମିତ ସରଳ ମାନଯନ୍ତ୍ର ସାହାଯ୍ୟରେ ବାରବାଟୀ ଦୁର୍ଗଠାରୁ ସୁଦୂର ସପ୍ତଶଯ୍ୟା ପାହାଡ଼ର ଉଚ୍ଚତା ମାପି ଏହାର ଉଚ୍ଚତା ୧୧୬୮ ହାତ ୧୬ ଆଙ୍ଗୁଳ ବୋଲି ଦର୍ଶାଇ ତତ୍କାଳୀନ ବ୍ରିଟିଶ କମିଶନର କୁକ୍ ସାହେବଙ୍କୁ ଚକିତ କରି ଦେଇଥିଲେ ।

ତାଳପତ୍ର ପୋଥିରୁ କାଗଜ ପୁସ୍ତକର ମୁଦ୍ରଣ ନିମନ୍ତେ ମଞ୍ଜୁଷା ରାଜାଙ୍କ ସମେତ କେତେଜଣ ମହାନୁଭବ ଦାତା କିଛି କିଛି ସାହାଯ୍ୟ କରିବାକୁ ଆଗେଇ ଆସିଲେ । ପ୍ରଥମେ ତାଳପତ୍ର ପୋଥିରୁ ପଣ୍ଡିତ ଘନଶ୍ୟାମ ମିଶ୍ର ନାମକ ଜନୈକ ବିଦ୍ୱାନ କାଗଜକୁ ଓଡ଼ିଆ ଭାଷାର ଶ୍ଳୋକମାନ ଉତାରିଲେ । କଲିକତାର ଗିରୀଶ ବିଦ୍ୟାରତ୍ନ ମୁଦ୍ରଣାଳୟରେ ଦୀର୍ଘ ପାଞ୍ଚବର୍ଷ ଧରି ମୁଦ୍ରଣ କରାଯାଇ ୧୮୯୯ ମସିହାରେ ସମାପ୍ତ ହେଲା । ମୁଦ୍ରଣ ସମୟରେ ପ୍ରୁଫ୍ ସମୂହର ସଂଶୋଧନ ନିମନ୍ତେ ସାମନ୍ତଙ୍କ ନିକଟକୁ ପଠାଯାଉଥିଲା । ସାମନ୍ତଙ୍କର ଜଣେ ଅନ୍ତରଙ୍ଗ ଶିଷ୍ୟ ରାଜବଲ୍ଲଭ ମିଶ୍ର ସେସବୁକୁ ପଠନ କରି ସାମନ୍ତଙ୍କୁ ଶୁଣାଉଥିଲେ । ସାମନ୍ତ ସେସବୁ ଶୁଣିଲା ପରେ ତ୍ରୁଟି ସଂଶୋଧନ କରୁଥିଲେ । ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ପ୍ରଥମ ସଂସ୍କରଣ ମୁଦ୍ରଣରେ ୧୨୫୦ ଟଙ୍କା ବ୍ୟୟ କରାଯାଇଥିଲା । ସେହି ପୁସ୍ତକ ମଧ୍ୟରୁ ଜର୍ମାନୀ ୧୦୦୦ ଖଣ୍ଡ, ଆମେରିକା ୮୦୦ ଖଣ୍ଡ, ଇଂଲଣ୍ଡ ୭୦୦ ଖଣ୍ଡ ଏବଂ ଫ୍ରାନ୍ସ ୩୦୦ ଖଣ୍ଡ ପୁସ୍ତକ କ୍ରୟ କରି ନେଇଥିଲେ । ଅବଶିଷ୍ଟ ୨୨୦୦ ଖଣ୍ଡ ପୁସ୍ତକ ବିକ୍ରୟ ନହୋଇ ସାମନ୍ତଙ୍କ ବାସଭବନରେ ଅନେକ ଦିନ ଧରି ପଡ଼ି ରହିଥିଲା ଏବଂ ତନ୍ମଧ୍ୟରୁ ଅନେକ ପୁସ୍ତକ କୀଟଦଷ୍ଟ ହୋଇ ନଷ୍ଟ ହୋଇଯାଇଥିଲା ।

ସାମନ୍ତ ଚନ୍ଦ୍ରଶେଖରଙ୍କର ପାର୍ଥିବ ଶରୀର ୧୯୦୪ ମସିହା ଜୁନ୍‌ମାସ ୧୧ ତାରିଖ କୃଷ୍ଣ ଦ୍ୱାଦଶୀ ଶନିବାର ଦିନ ଶ୍ରୀକ୍ଷେତ୍ରରେ ବିଲୟ ଘଟିଲା । ଉତ୍କଳମାତାର ଯୋଗ୍ୟତମ ସନ୍ତାନ ପଠାଣି ସାମନ୍ତଙ୍କର ବିୟୋଗରେ ସମଗ୍ର ରାଜ୍ୟବାସୀ ଦୁଃଖାଭିଭୂତ ହୋଇ ପଡ଼ିଥିଲେ । ତାଙ୍କ ବିୟୋଗରେ ଶୋକ ପ୍ରକାଶ କରିବା ନିମନ୍ତେ ୧୯୦୪ ମସିହା ଜୁନମାସ ୧୯ ତାରିଖ ଦିନ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଆବାହକତ୍ୱରେ ପୁରୀ ଜିଲ୍ଲା ସ୍କୁଲ ଗୃହରେ ଏକ ଶୋକସଭାର ଆୟୋଜନ କରାଯାଇଥିଲା । ସେହି ସଭାରେ ଡେପୁଟି ମାଜିଷ୍ଟ୍ରେଟ ଶ୍ରୀ ରାଧାକାନ୍ତ ବନ୍ଦୋପାଧ୍ୟାୟ ପୌରୋହିତ୍ୟ କରିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ସାମନ୍ତଙ୍କ ଉଦ୍ଦେଶ୍ୟରେ ଲେଖିଥିବା ନିବନ୍ଧ ପାଠ କରି କହିଥିଲେ, 'ବର୍ତ୍ତମାନ ଦୁର୍ଦ୍ଦଶାଗ୍ରସ୍ତ, କୁସଂସ୍କାରବିଜଡ଼ିତ, ପରପଦାନତ, ଲାଞ୍ଛିତ, ଆଳସ୍ୟସର୍ବସ୍ୱ ଭାରତରେ ମୌଳିକ ଶକ୍ତିସଂପନ୍ନ ପୁରୁଷର ଆବିର୍ଭାବ ଉପନ୍ୟାସ ପରି ପ୍ରତୀୟମାନ ହୁଏ ସତ୍ୟ, ମାତ୍ର ମହାତ୍ମା ଚନ୍ଦ୍ରଶେଖର ଭାରତର ଅନୁନ୍ନତମ ପ୍ରଦେଶ ଉତ୍କଳର ଗଭୀର ପ୍ରଳୟାନ୍ଧକାର ମଧ୍ୟରେ ପ୍ରଚଣ୍ଡ ଜ୍ୟୋତିଷ୍ମଣା ସଦୃଶ ଆବିର୍ଭୂତ ହୋଇଥିଲେ ।' ନୀଳକଣ୍ଠ ଦାସଙ୍କଦ୍ୱାରା ପଠିତ ଏହି ନିବନ୍ଧ ୧୯୦୭ ମସିହାରେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା ।

ୟୁରୋପ ମହାଦେଶର ପ୍ରଖ୍ୟାତ ଜ୍ୟୋତିର୍ବିଜ୍ଞାନୀ ଟାଇକୋବ୍ରାହେଙ୍କଠାରୁ ଶ୍ରେଷ୍ଠତର ଭାବେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ଇଂଲଣ୍ଡରୁ ପ୍ରକାଶ ପାଉଥିବା ବିଖ୍ୟାତ ବିଜ୍ଞାନ ପତ୍ରିକା ନେଚରର ୧୮୯୯ ମାର୍ଚ୍ଚ ସଂଖ୍ୟାରେ ଏବଂ ନଲେଜ୍ ପତ୍ରିକାର ୧୮୯୯ ଜାନୁଆରୀ ସଂଖ୍ୟାରେ ଭୂୟସୀ ପ୍ରଶଂସା କରାଯାଇଥିଲା । ପଠାଣି ସାମନ୍ତଙ୍କର ଅମଳିନ ପ୍ରତିଭାକୁ ସୁଦୂର ଇଂଲଣ୍ଡବାସୀ ଚିହ୍ନି ପାରିଥିବାବେଳେ ନିଜ ଦେଶବାସୀ ତାଙ୍କୁ ଚିହ୍ନିପାରି ନଥିଲେ । ସେଥିପାଇଁ କ୍ଷୋଭ ପ୍ରକାଶ କରି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କର ପ୍ରସିଦ୍ଧ ଅବକାଶ ଚିନ୍ତା ପୁସ୍ତକରେ ଦର୍ଶାଇଥିଲେ -

ସ୍ୱଦେଶର ଘୋର ଜଡ଼ତା ଅନ୍ଧାର
　　　ରୋଧିଲା ପ୍ରଭା-ବିକାଶ
ତଥାପି ବିଦେଶେ ଚିହ୍ନରା ଗ୍ରାହକେ
　　　ଲଭିଲେ କ୍ଷୀଣ ଆଭାସ ।

ଅବଶ୍ୟ ସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଷାଠିଏ ଦଶକରେ ସାଂସ୍କୃତିକ ବ୍ୟାପାର ବିଭାଗର ମନ୍ତ୍ରୀ ଥିବାବେଳେ ପଠାଣି ସାମନ୍ତ ଓ ତାଙ୍କର ସିଦ୍ଧାନ୍ତ ଦର୍ପଣ ଉପରେ ବିଶ୍ୱର ବିଭିନ୍ନ ସ୍ଥାନରୁ ଉପାଦେୟ ଲେଖାମାନ ସଂଗ୍ରହ କରିଥିଲେ । ତାଙ୍କର ଦୁର୍ଭାଗ୍ୟ ଯେ ତାଙ୍କ ମନ୍ତ୍ରିମଣ୍ଡଳର ପତନ ଘଟିଥିଲା । ତେଣୁ ବହୁ ବିଳମ୍ବରେ ସେ ବାରମ୍ବାର ପତ୍ର ଲେଖିବାରୁ ସେହି ଲେଖାଗୁଡ଼ିକ ପ୍ରକାଶ ପାଇଥିଲା । ଭୁବନେଶ୍ୱରରେ ପଠାଣି ସାମନ୍ତଙ୍କ ସ୍ମୃତିରେ ଏକ ପ୍ଲାନେଟେରିଅମ ମଧ୍ୟ ହୋଇଛି ।

ଆଡ଼ଭୋକେଟ
ସଂପାଦକ, ପଠାଣି ସାମନ୍ତ ମେମୋରିଆଲ ପରିଷଦ
ଖଣ୍ଡପଡ଼ା, ନୟାଗଡ଼

# "ଉତ୍କଳ ପ୍ରସଙ୍ଗ-୨୦୦୮"ର ବାର୍ଷିକ ସୂଚୀ

## ଅପ୍ରେଲ



## ମଇ



## ଜୁନ



## ଜୁଲାଇ

- ଦାରୁବ୍ରହ୍ମ ଜଗନ୍ନାଥଙ୍କର ବିଶେଷତ୍ୱ — ଡାକ୍ତର କବି ପ୍ରସାଦ ମିଶ୍ର
- ମାନଭଞ୍ଜନ — ଡକ୍ଟର ବଳରାମ ଦାସ
- ଶ୍ରୀଜଗନ୍ନାଥ ଓ ମା’ ଲକ୍ଷ୍ମୀ — ଶିବସୁନ୍ଦର ପଟ୍ଟନାୟକ
- ପୁରୁଷୋତ୍ତମ ଓ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ — ଡଃ ନାରାୟଣ ବାବା
- ଶ୍ରୀଜଗନ୍ନାଥ ସଂସ୍କୃତି — ରବୀନ୍ଦ୍ର କୁମାର ବେହୁରିଆ
- ଅଭୀପ୍ସା — ବ୍ରହ୍ମୋତ୍ରୀ ମହାନ୍ତି
- ବିଶ୍ୱର ଦେବତା ଶ୍ରୀଜଗନ୍ନାଥ — ଦେବାଶିଷ ଚକ୍ରବର୍ତ୍ତୀ
- ଶଙ୍ଖକ୍ଷେତ୍ରେ ଜୟ ଶଙ୍ଖଧ୍ୱନି — ପ୍ରମୋଦ କୁମାର ନାୟକ
- ଶ୍ରୀଜଗନ୍ନାଥ ଓ ଗରୁଡ଼ସ୍ତମ୍ଭ — ଶ୍ରୀନିବାସ ଆଚାର୍ଯ୍ୟ
- ରଥଯାତ୍ରା — ଗୁରୁକଲ୍ୟାଣ ମହାପାତ୍ର
- ଅନୁଭବରେ ଶ୍ରୀଜଗନ୍ନାଥ — ଦାମୋଦର ପାଢ଼ୀ
- ଜଗନ୍ନାଥ — ଡକ୍ଟର ସୁଷମା ମିଶ୍ର
- ଯୋଗ ସଂସ୍କୃତି ଓ ଶ୍ରୀଜଗନ୍ନାଥ — ଡଃ ରମାକାନ୍ତ କର
- ଶ୍ରୀକ୍ଷେତ୍ର : ପ୍ରସିଦ୍ଧ ସନ୍ଥଙ୍କ ମିଳନ ଭୂମି — ଅରୁଣ କୁମାର ପଣ୍ଡା
- ଓଡ଼ିଶାର ଦ୍ୱିତୀୟ ଶ୍ରୀକ୍ଷେତ୍ର — ସୁରମା ପାଢ଼ୀ
- କୋଇଲି ବୈକୁଣ୍ଠ — ଡକ୍ଟର ହରପ୍ରସାଦ ପରିଚ୍ଛା ପଟ୍ଟନାୟକ
- ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସହ ସଂପର୍କିତ ଦୁଇଟି ମୁଖ୍ୟ ମନ୍ଦିର — ସଦାଶିବ ମିଶ୍ର
- ଚକାନୟନ : ଏକ ମନ୍ଥନ — ଡକ୍ଟର ମନୀନ୍ଦ୍ର ମହାନ୍ତି
- ବାହୁଡ଼ାରେ ତମେ ମନେପଡ଼ — ନେତ୍ରାନନ୍ଦ ସାମନ୍ତରାୟ
- ଶ୍ରୀଜଗନ୍ନାଥଙ୍କ ଭୂସଂପତ୍ତିର ସୁରକ୍ଷା — ଡକ୍ଟର ଦୁର୍ଗା ପ୍ରସନ୍ନ ଚୌଧୁରୀ
- ତୁମେ ସମସ୍ତଙ୍କର — ଶ୍ୟାମ ପ୍ରକାଶ ସେନାପତି
- ମାନବବାଦର ପ୍ରତୀକ ବିଶ୍ୱପ୍ରସିଦ୍ଧ ରଥଯାତ୍ରା — ଡକ୍ଟର ବିଜୟାନନ୍ଦ ସିଂହ
- ଚାରିକ୍ଷେତ୍ରର ସମାନତା — ପୀତାମ୍ବର ପ୍ରଧାନୀ
- ଶ୍ରୀଜଗନ୍ନାଥ ଓ ଶ୍ରୀରାମଚନ୍ଦ୍ର — ମଧୁସୂଦନ ପଟ୍ଟନାୟକ
- ଶ୍ରୀମନ୍ଦିରରେ ଅଧରପଣା — ରବିନାରାୟଣ ପାଣି
- ଶ୍ରୀଜଗନ୍ନାଥଙ୍କ ଅନବସର ଏକ ଅନୁଭବ — ପ୍ରଫୁଲ୍ଲ ପଟ୍ଟନାୟକ
- ଶ୍ରୀଜଗନ୍ନାଥଙ୍କ ଅନବସର କାଳରେ ଅଲାରନାଥ ଦର୍ଶନ — ପଙ୍କଜ ସାହୁ
- କହେ ସାଲବେଗ ହୀନ — ଡଃ ଶ୍ରୀଚରଣ ଦାସ
- ଆହେ ଚକା ଆଖି... — ସତ୍ୟାନନ୍ଦ ଚମ୍ପତିରାୟ
- ରତ୍ନଝରୀ ଚୋରି — ନିରଞ୍ଜନ ପ୍ରଧାନ
- ଦର୍ଶନେ ପ୍ରଭୁ ମୋ ଆଶା — ବାଇଧର ବାରିକ
- ଆହେ ନୀଳ ଶଇଳ... — ସତ୍ୟନାରାୟଣ ମହାପାତ୍ର
- ରଥଯାତ୍ରା - ଦୁଇ ହଜାର ଆଠ — ତ୍ରିଭୁବନାନନ୍ଦ ସରସ୍ୱତୀ
- ମହାପ୍ରସାଦ — ଲାଲମୋହନ ପଟ୍ଟନାୟକ
- ଶ୍ରୀଜଗନ୍ନାଥଙ୍କ ଗୋପନ ଜଳଯାତ୍ରାକାଳୀନ ସୁରକ୍ଷା ଘାଟି — ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର
- ଶ୍ରୀଜଗନ୍ନାଥ ବନ ପ୍ରକଳ୍ପ — ଭାଗୀରଥି ବେହେରା
- ସମନ୍ୱୟ — ସୁଶାନ୍ତ କୁମାର ମହାନ୍ତି
- ଶ୍ରୀଜଗନ୍ନାଥଙ୍କର ଦାରୁବିଗ୍ରହ ଉପାସନାର ରହସ୍ୟ — ଡାକ୍ତର ଦୀନବନ୍ଧୁ ମହାରଣା
- ଜଗନ୍ନାଥ ଚେତନାଧର୍ମୀ ଓଡ଼ିଆ ଚଳଚ୍ଚିତ୍ର — ଦିଲ୍ଲୀପ ହାଲି
- କୃପାବାରି ଢାଳିଦିଅ — ଡକ୍ଟର ହେମନ୍ତ କୁମାର ଛୋଟରାୟ
- ଭଞ୍ଜ ସାହିତ୍ୟରେ ଶ୍ରୀଜଗନ୍ନାଥ — ହରିଶ୍ଚନ୍ଦ୍ର ବେହେରା
- ଶୟନ ପ୍ରତିମା — ହରିହର ମିଶ୍ର
- ବିଂଶ ଶତାବ୍ଦୀର ବୈଷ୍ଣବ କବିଗଣଙ୍କ ଜଗନ୍ନାଥ ଚେତନା — ଡଃ ଅରବିନ୍ଦ ରାୟ
- ଜଗନ୍ନାଥ ଜଣାଣ — କୋକିଳବାଳା ମିଶ୍ର
- ଶାବର ଶ୍ରୀକ୍ଷେତ୍ର — କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
- ପାରାଦ୍ୱୀପ ମଧୁବନ କ୍ଷେତ୍ରର ଶ୍ରୀଜଗନ୍ନାଥ — ପ୍ରଭାତ କୁମାର ନନ୍ଦ
- ନିବେଦନ — ରତ୍ନାକର ରାଉତ
- ନୟାଗଡ଼ର ଜଗନ୍ନାଥ ମନ୍ଦିର — ଗୀତା ଦେବୀ
- ଶେଷ ଗୁହାରି — ଚନ୍ଦ୍ରଶେଖର ପଣ୍ଡା
- ଜୟପୁରର ରଥଯାତ୍ରା — ଡଃ ପ୍ରମୋଦିନୀ ହୋତା
- ଧନ୍ୟ ନୀଳାଦ୍ରି ସୁନ୍ଦର ପ୍ରାଣାରାମ ହରି — ଇଂ ରଘୁନାଥ ପାତ୍ର
- ଅନୁଗୋଳ : ଶୈଳଶ୍ରୀ କ୍ଷେତ୍ରରେ ଘୋଷଯାତ୍ରା — ବରଦା ପ୍ରସନ୍ନ ଦାସ
- ଘୋଷଯାତ୍ରା — ରବି ଶତପଥୀ
- ନୀଳଗିରି ରଥଯାତ୍ରା — ପ୍ରମୋଦ କୁମାର ମଲ୍ଲିକ
- ନୂଆଦିଲ୍ଲୀରେ ରଥଯାତ୍ରା — ସୁଚେତା ଦାସ ମହାପାତ୍ର
- ତୁ ମୋତେ ଭଲ ପାଆ — ବିକ୍ରମ ବର୍ମା
- ଶ୍ରୀଜଗନ୍ନାଥ ଓ ଜୈନଧର୍ମ — ଗଙ୍ଗୋତ୍ରୀ ଦେବୀ
- ଶ୍ରୀମନ୍ଦିରରେ ହନୁମାନ ଉପାସନା — ଭାସ୍କର ମିଶ୍ର
- ଆଉ କେତେ ବାଟ ପୁରୀ ? — ଶ୍ରୀଦେବ
- ଯୁଗେ ଯୁଗେ ଶ୍ରୀକ୍ଷେତ୍ର — ସୁରେଶ କୁମାର ପ୍ରଧାନ
- ଶ୍ରୀଜଗନ୍ନାଥାଷ୍ଟକମ୍ (୧) — ଶ୍ରୀ ମହାମେଧାନନ୍ଦନାଥ ସରସ୍ୱତୀ
- ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର — ମହେନ୍ଦ୍ର କୁମାର ପଣ୍ଡା
- ଶ୍ରୀକ୍ଷେତ୍ର ଓ ଶଙ୍କରଦେବ — ବିଜୟ ନାୟକ
- ମୁଁ ସେଇ ନଡ଼ିଆବାଲା — ଭିକାରୀ ଧଳ
- ଚାରୁ ଚର୍ଚ୍ଚାର ଅଭାବ ତୋ’ଠାରେ — ଡା: ସରୋଜିନୀ ଷଡଙ୍ଗୀ

**ଅଗଷ୍ଟ**

- ଭାରତରେ ଅଗଷ୍ଟ ବିପ୍ଳବ ଓ ତାହାର ପ୍ରଭାବ — ଗୁରୁକଲ୍ୟାଣ ମହାପାତ୍ର
- ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା — ବସନ୍ତ କୁମାର ଦେବ
- ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ନାରୀ — ମାନସ କୁମାର ମଲ୍ଲିକ
- ଉତ୍କଳୀୟ କବି ପ୍ରାଣରେ ଦେଶପ୍ରୀତିର ଝଙ୍କାର — କାଞ୍ଚି ନାରାୟଣ ମହାନ୍ତି
- ସ୍ୱାଧୀନତା ସଂଗ୍ରାମର ପୁଣ୍ୟପୀଠ ବରୀ ଆଶ୍ରମ — ଗିରିଧାରୀ ସ୍ୱାଇଁ
- ନିମକ୍ ହାରାମ୍ ଜାଗିର୍ ଓ ଫତେ ମହମ୍ମଦ — ରମେଶ ନନ୍ଦ
- ଆଦିବାସୀ ସେବାରେ ସମର୍ପିତ ଜୀବନ, ବିଶ୍ୱନାଥ ଆଞ୍ଝା — ବିଭୂତିଭୂଷଣ ଆଚାର୍ଯ୍ୟ
- ସ୍ୱାଧୀନତା ଆନ୍ଦୋଳନରେ ନୀଳକଣ୍ଠ ଦାସ ଓ ତାଙ୍କ ପରିବାର — ପ୍ରଫେସର ଡାଃ ସିଦ୍ଧାର୍ଥ ଦାସ
- ବର୍ଷୀୟାନ ସଂଗ୍ରାମୀ ବିବୁଧେନ୍ଦ୍ର — କୃଷ୍ଣଚନ୍ଦ୍ର ସୁଆର
- ସଂଗ୍ରାମୀ ସ୍ୱପ୍ନାନନ୍ଦ ପାଣିଗ୍ରାହୀ — ପବିତ୍ର ମୋହନ ବାରିକ
- ଚିଲିକାର ଚିତ୍ତାକର୍ଷକ ଡଲ୍‌ଫିନ୍ — ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି, ଡକ୍ଟର ସଂଜୟ ନାରାୟଣ ଓତା

